# ଉତ୍କଳ ପ୍ରସଙ୍ଗ

୫୧ ଭାଗ ୧ମ ସଂଖ୍ୟା ଶ୍ରାବଣ ୧୯୧୬ ଶକାବ୍ଦ ଅଗଷ୍ଟ ୧୯୯୪

## ସମ୍ପାଦକ ମଣ୍ଡଳୀ



ମୁଦ୍ରଣ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦

ପ୍ରକାଶକ
ଶ୍ରୀ ସୁରସେନ ଜେନା, ନିର୍ଦ୍ଦେଶକ
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର
ଭୁବନେଶ୍ୱର

ବାର୍ଷିକ ଦେୟ : ଟ ୨୦·୦୦
ପ୍ରତି ଖଣ୍ଡ : ଟ ୨·୦୦

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ସରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଗୁଡ଼ିକ ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନୁହେଁ ।
"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ହେଁ ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ କ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

# ଜାତୀୟତାର ପ୍ରତୀକ

କାଶ୍ମୀରରୁ କନ୍ୟାକୁମାରୀ ଯାଏଁ ଓ କାମରୂପଠାରୁ ଦ୍ୱାରକା ଯାଏଁ ଆମର ୮୦ କୋଟି ଲୋକଙ୍କୁ ଯାଚି ଏକାଠି ବାନ୍ଧି ରଖିଛି ତିନୋଟି ମମତାର ଡୋରି :

## ଜାତୀୟ ପତାକା



## ଜାତୀୟ ସଙ୍ଗୀତ

ଜନ–ଗଣ–ମନ–ଅଧିନାୟକ ଜୟ ହେ
ଭାରତ–ଭାଗ୍ୟ–ବିଧାତା
ପଞ୍ଜାବ–ସିନ୍ଧୁ–ଗୁଜରାଟ–ମରାଠା
ଦ୍ରାବିଡ଼–ଉତ୍କଳ–ବଙ୍ଗ
ବିନ୍ଧ୍ୟ–ହିମାଚଳ–ଯମୁନା–ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ-ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା.
ଜନଗଣ–ମଙ୍ଗଳଦାୟକ ଜୟ ହେ,
ଭାରତ–ଭାଗ୍ୟ–ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

## ଜାତୀୟ ସଙ୍କେତ

ଏ ତିନୋଟିର ପଛରେ ଅଛି—ଯୁଗ ଯୁଗର ଇତିହାସ, ଆମର ପ୍ରାଚ୍ୟ ପରମ୍ପରା ଓ ଆତ୍ମତ୍ୟାଗର ମହନୀୟତା । ବଂଶାନୁକ୍ରମେ ସମଗ୍ର ଜାତି ତଥା ପ୍ରତ୍ୟେକ ବ୍ୟକ୍ତି ପକ୍ଷେ ଏ ତିନୋଟି ଗୋଟିଏ ଗୋଟିଏ ପବିତ୍ର ନ୍ୟାସ ବା ଦାୟିତ୍ୱ। ସେଗୁଡ଼ିକର ସୁରକ୍ଷା ପାଇଁ ଏ ଜାତି ଯୁଗେ ଯୁଗେ ପ୍ରାଣ ପଣ କରି ଆସିଛି, କରୁଛି ଓ କରୁଥିବ । ନିଜର ବିଶ୍ୱାସରେ ଅଟଳ ରହି ଯେଉଁ ଜାତି ଯୂପ କାଠରେ ହସି ହସି 'ଶିର' ଦେଇପାରେ, ସାରା ବିଶ୍ୱକୁ ସୁହୃଦ ଦୃଷ୍ଟିରେ ଦେଖି ଯେ ବିଶ୍ୱ ମଞ୍ଚରେ ନିରପେକ୍ଷତାର ମଶାଲ ଜାଳି ଧରେ, ଯାର ଅସି ରଖି ଆଗରେ ସଙ୍ଗୀନ୍ ପୁନ ମଥା ନତ କରେ – ତା'ର ଆଶା ଅଜେୟ, ଅମର ।

ଆ ମ ର ପ ତା କା

ଚିତ୍ରଟିର ପରିଚୟ ସମସ୍ତେ ଜାଣନ୍ତି ।

## ସ୍ୱାଧୀନତା ଦିବସ ଉପଲକ୍ଷେ
## ମାନ୍ୟବର ରାଜ୍ୟପାଳ
# ଶ୍ରୀ ବିଃ ସତ୍ୟନାରାୟଣ ରେଡ୍ଡୀଙ୍କ
# ବାର୍ତ୍ତା



ଆମ ଦେଶର ୪୮ତମ ପବିତ୍ର ସ୍ୱାଧୀନତା ଦିବସ ପାଳନ ଅବସରରେ ଓଡ଼ିଶାର ଜନସାଧାରଣଙ୍କୁ ମୁଁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜ୍ଞାପନ କରୁଛି । ଆମେ ଯେତେବେଳେ ଏହି ଐତିହାସିକ ଓ ଘଟଣାବହୁଳ ଦିବସଟିର ସ୍ମୃତିଚାରଣ କରୁ, ସେତେବେଳେ ଆମ ଦେଶର ଅଗଣିତ ସ୍ୱାଧୀନତା ସଂଗ୍ରାମୀ କିଭଳି ଆତ୍ମୋତ୍ସର୍ଗ କରି ଦେଶର ସ୍ୱାଧୀନତା ହାସଲ କରି ପାରିଥିଲେ, ସେ କଥା ସ୍ୱତଃ ପରିସ୍ଫୁଟ ହୁଏ । ଆସନ୍ତୁ, ଆମେ ପୁଣି ଥରେ ସେହି ଶହୀଦମାନଙ୍କ ଦ୍ୱାରା ଅନୁସୃତ ନିଃସ୍ୱାର୍ଥପର ସେବା ମନୋଭାବ ଦ୍ୱାରା ଅନୁପ୍ରାଣିତ ହୋଇ ଦେଶ ସେବାରେ ଆତ୍ମୋତ୍ସର୍ଗ କରିବା ।

ସ୍ୱାଧୀନତାର ଏହି ଅମୂଲ୍ୟ ଦାନ ଆମେ ସବୁ ସେହି ଦେଶପ୍ରେମୀଙ୍କଠାରୁ ପାଇଅଛୁ, ଯେଉଁମାନେ କି ବହୁ ଦଶନ୍ଧି ଧରି ଅସୀମ ସାହସ ଓ କଠିନ ପରିଶ୍ରମ କରି ସ୍ୱାଧୀନତା ସଂଗ୍ରାମ ସହ ଓତଃପ୍ରୋତ ଭାବେ ଜଡ଼ିତ ଥିଲେ । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସତ୍ୟାଗ୍ରହ ଓ ଅହିଂସା ଉପରେ ଆଧାରିତ ଆମର ସ୍ୱାଧୀନତା ସଂଗ୍ରାମ ମାନବ ଇତିହାସରେ ଏକ ବିରଳ ଦୃଷ୍ଟାନ୍ତ । ଏହି ମହାନ୍ ଜାତୀୟ ଆନ୍ଦୋଳନରେ ଓଡ଼ିଶାର ଜନସାଧାରଣ ବିଶେଷ ତ୍ୟାଗ ଓ ନିଷ୍ଠାର ସହ ଯୋଗଦାନ କରିଥିଲେ । ଆସନ୍ତୁ, ଆଜିର ଏହି ମହାନ୍ ଦିବସରେ ଯେଉଁମାନେ ଦେଶ ସେବାରେ ଆତ୍ମୋତ୍ସର୍ଗ କରିଛନ୍ତି, ସେମାନଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଆମେ ଯେଉଁ ସ୍ୱାଧୀନତା ହାସଲ କଲୁ ତାହା କେବଳ ଆମ ସଂଗ୍ରାମର ଅଗ୍ରମାରମ୍ଭ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମର ଭବିଷ୍ୟତ ନିର୍ଦ୍ଧାରଣ କରିବା ଲାଗି ଏହି ସଂଗ୍ରାମ ଆମକୁ କେବଳ ସ୍ୱାଧୀନତା ହିଁ ଦେଇଥିଲା ଓ ତତ୍ ସହିତ ଆମର ଜନସାଧାରଣଙ୍କ ଆଶା ଆକାଙ୍କ୍ଷାର ସଫଳ ରୂପାୟନ ଲାଗି ଏକ ସୁଯୋଗ ଦେଇଥିଲା । ସେହି ଉପଲବ୍ଧ ସ୍ୱାଧୀନତାର ସୁରକ୍ଷା କରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କର ଜୀବନଧାରଣ ମାନ ଉନ୍ନତ କରିବା ଓ ସେମାନଙ୍କର ସ୍ୱପ୍ନକୁ ସାକାର କରିବା ନିମନ୍ତେ ଆସ୍ମମାନଙ୍କୁ ବିଜ୍ଞତା ଓ ଅସୀମ ଧୈର୍ଯ୍ୟର ସହ ଜାତି ନିର୍ମାଣ କାର୍ଯ୍ୟକୁ ତ୍ୱରାନ୍ୱିତ କରିବାକୁ ପଡ଼ିବ । ସାମାଜିକ ନ୍ୟାୟ ଓ ସାଂପ୍ରଦାୟିକ ସଂପ୍ରୀତିକୁ ଆଧାର କରି ଆମକୁ ପ୍ରଗତି ଓ ସମୃଦ୍ଧି ହାସଲ କରିବାକୁ ପଡ଼ିବ ।

ଓଡ଼ିଶାରେ ବିପୁଳ ପ୍ରାକୃତିକ ସମ୍ପଦ ଭରି ରହିଅଛି । ଆମ ରାଜ୍ୟବାସୀଙ୍କର କଳା ଓ କାରିଗରୀ କ୍ଷେତ୍ରରେ ଏକ ଉଚ୍ଚ ମୂଲ୍ୟବୋଧ ରହିଛି । ଆମ ରାଜ୍ୟରେ ଥିବା ପ୍ରାକୃତିକ ବିଭବର ପୂର୍ଣ୍ଣ ବିନିଯୋଗ କରି-ସମଗ୍ର ଜନସାଧାରଣଙ୍କର ସାମୂହିକ ବିକାଶ କରିବା ଲାଗି ଆସ୍ମମାନଙ୍କୁ ଏକ ସଂକଳ୍ପବଦ୍ଧ ତଥା ବଳିଷ୍ଠ ଉଦ୍ୟମ କରିବାକୁ ପଡ଼ିବ । ଜନସାଧାରଣଙ୍କୁ ଅର୍ଥନୈତିକ ସୁବିଧା ସୁଯୋଗ, ସାମାଜିକ ନ୍ୟାୟ ତଥା ରାଜ୍ୟର ସର୍ବାଙ୍ଗୀନ ବିକାଶ ଲାଗି ଅନ୍ତର୍ନିହିତ ଅର୍ଥନୈତିକ ସାମର୍ଥ୍ୟ ଉପରେ ସରକାର ସବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ଓଡ଼ିଶାର ଅର୍ଥନୀତି ମୁଖ୍ୟତଃ ଗ୍ରାମ ଭିତ୍ତିକ । କୃଷି, ଯାହାକି ରାଜ୍ୟର ଶତକଡ଼ା ୭୫ ଭାଗ ଲୋକଙ୍କୁ କର୍ମ ସଂସ୍ଥାନ ଯୋଗାଇ ଥାଏ ତାହା ରାଜ୍ୟର ଅର୍ଥନୀତିରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଛି । ୧୯୯୩-୯୪ ମସିହାରେ ୮୬ ଲକ୍ଷରୁ ଅଧିକ ମେଟ୍ରିକ୍ ଟନ୍ ଖାଦ୍ୟଶସ୍ୟ ଉତ୍ପାଦନ ହେବା ଫଳରେ ଏକ ଉଲ୍ଲେଖନୀୟ ସଫଳତା ହାସଲ କରାଯାଇ ପାରିଛି । ସେହିଭଳି ୧୯୯୩-୯୪ ମସିହାରେ

ଧାନ ଯେ କି ରାଜ୍ୟର ପ୍ରଧାନ ଖାଦ୍ୟଶସ୍ୟ, ତାହାର ଉତ୍ପାଦନ ଆଶାତୀତ ଭାବେ ୬୮ ଲକ୍ଷ ମେଟ୍ରିକ୍ ଟନ୍ ଊର୍ଦ୍ଧ୍ୱକୁ ବୃଦ୍ଧି ପାଇଛି । ସରକାର ଖାଦ୍ୟଶସ୍ୟର ଉତ୍ପାଦନ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ବିଭିନ୍ନ କୃଷି ପ୍ରଣାଳୀ ପ୍ରବର୍ତ୍ତନ ଲାଗି ଏକ ବ୍ୟାପକ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବାକୁ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ତୈଳବୀଜ, ଫଳଗୁଛ, ଉନ୍ନତ ଧରଣର ବିହନ ଯୋଗାଣ ଓ ଅତ୍ୟାଧୁନିକ କୃଷି ଯନ୍ତ୍ରପାତି ବଣ୍ଟନ ଉପରେ ସ୍ୱତନ୍ତ୍ର ଗୁରୁତ୍ୱ ଆରୋପ କରାଯାଇଛି । ଆଗାମୀ ବର୍ଷରେ କୃଷି ବେପାର ବାଣିଜ୍ୟ କ୍ଷେତ୍ରରେ ଆବଶ୍ୟକ ଭିତ୍ତିଭୂମିର ପ୍ରଚୁର ଉନ୍ନତି କରିବା ସଙ୍ଗେ ସଙ୍ଗେ ଜଳସେଚନର ସୁବିଧା ସୁଯୋଗ ପର୍ଯ୍ୟାପ୍ତ କରାଯିବା ଲାଗି ଆଶା କରାଯାଉଛି । କୃଷକ କଲ୍ୟାଣ ଯୋଜନା ଅନୁଯାୟୀ ସରକାର କୃଷକମାନଙ୍କୁ ଜଳସେଚନ ନିମନ୍ତେ ଭୂଗର୍ଭ ଜଳ ସମ୍ପଦକୁ ଉପଯୋଗ କରିବା ଲାଗି ପ୍ରୋତ୍ସାହନ ଦେବା ସଙ୍ଗେ ସଙ୍ଗେ ଯଦି କ୍ଷତି ସାଧନ ହୁଏ ତେବେ ସେ କ୍ଷେତ୍ରରେ କ୍ଷତିପୂରଣ ଦେବା ଲାଗି ମଧ୍ୟ ବିହିତ ବ୍ୟବସ୍ଥା ଗ୍ରହଣ କରାଯାଉଛି । ଗାଁ ଗହଳରେ ବ୍ୟାପକ ଶ୍ରମ ନିଯୁକ୍ତି କାର୍ଯ୍ୟକ୍ରମମାନ ସୃଷ୍ଟି କରାଯାଇଛି । ଏହା ଫଳରେ ଗ୍ରାମାଞ୍ଚଳ ଲୋକମାନଙ୍କର କ୍ରୟ ଶକ୍ତି ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଗୋଷ୍ଠୀ ସମ୍ପତ୍ତିମାନ ସୃଷ୍ଟି କରାଯାଇ ପାରିବ । ରାଜ୍ୟର ବୃଦ୍ଧ, ଅକ୍ଷମ ଓ ବିଧବାମାନଙ୍କ ନିମନ୍ତେ ସାମାଜିକ ସୁରକ୍ଷା ଭତ୍ତା ପ୍ରଦାନର ବ୍ୟବସ୍ଥା କରାଯାଇଛି । ଏହି ମାସଠାରୁ ୬୨ ହଜାର ଅତିରିକ୍ତ ହିତାଧିକାରୀ ସେମାନଙ୍କର ଭତ୍ତା ଗ୍ରହଣ କରିବେ । ମୋ ସରକାର ମହିଳା, ତଫସିଲଭୁକ୍ତ ଜାତି, ତଫସିଲଭୁକ୍ତ ଉପଜାତି ଓ ଅନଗ୍ରସର ଜାତିମାନଙ୍କର ଉନ୍ନତି କଳ୍ପେ ସ୍ୱତନ୍ତ୍ର ବ୍ୟବସ୍ଥା ଗ୍ରହଣ କରିଛନ୍ତି । ଗ୍ରାମାଞ୍ଚଳର ଗରିବ ଜନସାଧାରଣଙ୍କର ବାସଗୃହ ଜନିତ ସମସ୍ୟାର ସମାଧାନ କରିବା ଲାଗି ପ୍ରବର୍ତ୍ତିତ କଳିଙ୍ଗ କୁଟୀର ଯୋଜନା ସଫଳତାର ସହ କାର୍ଯ୍ୟକାରୀ ହେଉଛି । ଶକ୍ତି ସମ୍ବଳର ସମୁଚିତ ଭାରସାମ୍ୟ ରକ୍ଷା କରି ସେଗୁଡ଼ିକର ବ୍ୟାପକ ଉନ୍ନତି ସାଧନ ଓ ସୁଦକ୍ଷ ପରିଚାଳନା ହେଉଛି ଚିରସ୍ଥାୟୀ ଅର୍ଥନୈତିକ ଅଭିବୃଦ୍ଧିର ଚାବିକାଠି । ଇବ୍ ଉପତ୍ୟକା ଶକ୍ତି ପ୍ରକଳ୍ପର ପ୍ରଥମ ଓ ଦ୍ୱିତୀୟ ୟୁନିଟ୍‌ର କାର୍ଯ୍ୟ ସମ୍ପୂର୍ଣ୍ଣ ହେବା ଦ୍ୱାରା ଅତିରିକ୍ତ ୪୨୦ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଇ ପାରିବ । ଏହା ଗର୍ବର ବିଷୟ ଯେ ଓଡ଼ିଶା ବିଦ୍ୟୁତ୍ ଶକ୍ତି ଉତ୍ପାଦନର ପୃଥକୀକରଣ, ପ୍ରେରଣ ଓ ବଣ୍ଟନ ବ୍ୟବସ୍ଥାର ଯୋଜନାବଦ୍ଧ ଭାବେ ପୁନର୍ଗଠନ କରି ଦେଶର ନେତୃତ୍ୱ ନେଇ ପାରିଛି । ଏହି ପଦ୍ଧତି ଦେଶ ତଥା ବିଦେଶରେ ବିଶେଷ ଭାବେ ଆଦୃତ ହୋଇଛି । ଶକ୍ତି ସମ୍ବଳର ପୁନର୍ଗଠନ ବ୍ୟତୀତ ସରକାର ଆଉ ଏକ ଖଣିଜ ସମ୍ବଳର ଉନ୍ନତି ବିଧାନ ଲାଗି ଏକ ସମୁଚିତ ପଦକ୍ଷେପ ଗ୍ରହଣ କରିଛନ୍ତି । ଏହି କ୍ଷେତ୍ରରେ ବିଦେଶୀ ଶିଳ୍ପୋଦ୍ୟୋଗୀମାନଙ୍କୁ ପୁଞ୍ଜି ବିନିଯୋଗ କରିବା ପାଇଁ ଆକୃଷ୍ଟ କରାଯାଉଛି । ଏଥିସହ ପାରାଦ୍ୱୀପକୁ ରେଳରାସ୍ତା ସଂଯୋଗ ଓ ପାରାଦ୍ୱୀପ ବନ୍ଦରକୁ ଅଧିକ ଗଭୀର କରାଯିବାର ପ୍ରସ୍ତାବ କାର୍ଯ୍ୟକାରୀ ହେଲେ ରାଜ୍ୟର ଅର୍ଥନୀତି ବିଶ୍ୱ ଦରବାରରେ ମାନ୍ୟତା ଲାଭ କରିପାରିବ । ପ୍ରଗତିର ପଥ କଠିନ ଏବଂ ବହୁ ସମସ୍ୟାରେ ପରିପୂର୍ଣ୍ଣ । ଏ ସବୁର ଦୃଢ଼ ମୁକାବିଲା ଏବଂ ସମସ୍ତ ବାଧାବିଘ୍ନକୁ ଅତିକ୍ରମ କରିବା ନିମନ୍ତେ ତ୍ୟାଗ, ଉତ୍ସାହ ଓ ଦକ୍ଷତାର ଆବଶ୍ୟକତା ରହିଛି । ଓଡ଼ିଶାର ଭବିଷ୍ୟତ ଗଠନ ନିମନ୍ତେ ଶାନ୍ତି ଓ ସୌହାର୍ଦ୍ଦ୍ୟର ମଧ୍ୟ ବିଶେଷ ଆବଶ୍ୟକତା ରହିଛି । ସାଂପ୍ରଦାୟିକ ସଂପ୍ରୀତି ତଥା ଗୋଷ୍ଠୀ କଲ୍ୟାଣ ନିମନ୍ତେ ଅଙ୍ଗୀକାରବଦ୍ଧ ହେଲେ ଆମେ ସମୃଦ୍ଧିର ସାଧାରଣ ଲକ୍ଷ୍ୟ ହାସଲ କରି ପାରିବୁ । ସହନଶୀଳତା, ବିଶ୍ୱ ଭ୍ରାତୃଭାବ ଓ ସହିଷ୍ଣୁତା ଇତ୍ୟାଦି ଗୁଣଗୁଡ଼ିକ ଆମ ଜଗନ୍ନାଥ ସଂସ୍କୃତିର ମୂଳ ଆଧାର । ଏହାଦ୍ୱାରା ସାଂପ୍ରଦାୟିକ ସଂପ୍ରୀତି ଓ ଶାନ୍ତି ରକ୍ଷା କରାଯାଇ ପାରିବ । ଆମେ ସମସ୍ତେ ଏହି ପରମ୍ପରାଗୁଡ଼ିକର ସୁରକ୍ଷା ଲାଗି ପ୍ରୟତ୍ନ କରିବା ଓ ସଂକଳ୍ପବଦ୍ଧ ହେବା । ସ୍ୱାଧୀନତା ଦିବସ କେବଳ ଉତ୍ସବ ପାଳନର ଦିବସ ରୂପେ ଅଭିହିତ ହେବା ଉଚିତ ନୁହେଁ । ଏହା ନିଃସ୍ୱାର୍ଥପର ଦେଶ ସେବା ନିମନ୍ତେ ପୁନଃ ଉତ୍ସର୍ଗୀକୃତ କରିବା ଲାଗି ଆମମାନଙ୍କ ନିମନ୍ତେ ଗୁରୁତ୍ୱପୂର୍ଣ୍ଣ ଦିବସ । ମୁଁ ଆପଣମାନଙ୍କୁ ଏକଜିତ ହୋଇ ଏକ ସମ୍ବେଦନଶୀଳ, ସ୍ୱଚ୍ଛ ଓ ନ୍ୟାୟ ପ୍ରତିଷ୍ଠିତ ସମାଜ ଗଠନ କରିବା ଲାଗି ଆହ୍ୱାନ କରୁଅଛି । ଏହା ଫଳରେ ସାମାଜିକ ସୁବିଧା ସୁଯୋଗରୁ ବଞ୍ଚିତ ହେଉଥିବା ଜନସାଧାରଣ ଆବଶ୍ୟକ ସୁରକ୍ଷା ପାଇ ପାରିବେ । ଆସନ୍ତୁ, ଆମେ ସମସ୍ତେ ନିଜକୁ ଆତ୍ମୋତ୍ସର୍ଗ କରି ଦେଶର ସ୍ୱାଧୀନତାକୁ ସୁରକ୍ଷିତ କରିବା ।

ଜୟହିନ୍ଦ୍ !

ସ୍ୱାଧୀନତା ଦିବସ ଉପଲକ୍ଷେ

# ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ବାର୍ତ୍ତା



ପବିତ୍ର ସ୍ୱାଧୀନତା ଦିବସ ପାଳନ ଅବସରରେ ଓଡ଼ିଶାବାସୀ ମୋର ପ୍ରିୟ ଭାଇ ଭଉଣୀମାନଙ୍କୁ ଆନ୍ତରିକ ଶ୍ରଦ୍ଧା, ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି।

ସ୍ୱାଧୀନତା ଗୋଟିଏ ଜାତିର ଅମୂଲ୍ୟ ସମ୍ପଦ। ବ୍ରିଟିଶ୍ ଶାସନ କବଳରୁ ଦେଶକୁ ମୁକ୍ତ କରିବା ପାଇଁ ଯେଉଁ ଘୋର ସଂଘର୍ଷ ହୋଇଥିଲା, ତାହା ଆଜି ମଧ୍ୟ ରୋମାଞ୍ଚ ସୃଷ୍ଟି କରେ। ମହାତ୍ମା ଗାନ୍ଧୀଙ୍କ ଡାକରାରେ ଆମେ ସବୁ ଓ ଆମର ସାଥୀ ଲକ୍ଷ ଲକ୍ଷ ସ୍ତ୍ରୀ, ପୁରୁଷ, ଯୁବକ, ଯୁବତୀ ନିଜର ଓ ନିଜ ପରିବାରର ସୁଖସ୍ୱାଚ୍ଛନ୍ଦ୍ୟକୁ ବଳି ଦେଇ ଏହି ଲଢ଼େଇରେ ସାମିଲ ହୋଇଥିଲୁ। ସେମାନଙ୍କ ଭିତରୁ ଅନେକ ଆମର ସାଙ୍ଗସାଥୀ ମରି ହଜି ଗଲେଣି। ଆଜିର ଯୁବକ ସେତେବେଳର ତ୍ୟାଗ ଓ ଦେଶ ପାଇଁ ଦୁଃଖକଷ୍ଟ ଅଙ୍ଗେ ନିଭେଇ ନାହାନ୍ତି। ମୁଁ ସେମାନଙ୍କୁ ସେହି ତ୍ୟାଗ ଓ ସଂଗ୍ରାମର କଥା ମନେ ପକାଇ ଦେବାକୁ ଚାହେଁ।

୧୯୪୭ ଅଗଷ୍ଟ ୧୫ ତାରିଖ ଦିନ ପଣ୍ଡିତ ନେହେରୁ କହିଥିଲେ, "ବହୁ ବର୍ଷ ପୂର୍ବେ ଆମେ ଭାଗ୍ୟ ସହିତ ଏକ ବୁଝାମଣା କରିଥିଲୁ। ବର୍ତ୍ତମାନ ସେହି ପ୍ରତିଶ୍ରୁତି ପାଳନ କରିବାର ସମୟ ଆସିଛି।" ଆଜି ସ୍ୱାଧୀନତା ପାଇବାର ୪୭ ବର୍ଷ ପରେ ଆମେ ସମସ୍ତେ ନିଜକୁ ପଚାରିବା ଉଚିତ, ଆମେ ବାସ୍ତବରେ ସେଇ ପ୍ରତିଶ୍ରୁତି ପାଳନ କରିଛୁ କି ? ଆମ ଦେଶର କୋଟି କୋଟି ଲୋକେ ଏବେ ମଧ୍ୟ କ୍ଷୁଧା, ଦାରିଦ୍ର୍ୟ ଓ ବେକାରୀର ଅନ୍ଧକାରରେ ସଢୁଛନ୍ତି। ସେମାନଙ୍କ ପାଇଁ ଏ ପର୍ଯ୍ୟନ୍ତ ସ୍ୱାଧୀନତା ମୂଲ୍ୟହୀନ ହୋଇ ରହିଛି। ଆଜି ଆମକୁ ଲଢ଼େଇ ଜାରୀ ରଖିବାକୁ ହେବ – ଦାରିଦ୍ର୍ୟ ବିରୁଦ୍ଧରେ, ଅଶିକ୍ଷା ବିରୁଦ୍ଧରେ, ନିରକ୍ଷରତା ବିରୁଦ୍ଧରେ, ଯୌତୁକ ବିରୁଦ୍ଧରେ, ଅନ୍ୟାୟ ବିରୁଦ୍ଧରେ, ଦୁର୍ନୀତି ବିରୁଦ୍ଧରେ ଓ ଆଳସ୍ୟ ବିରୁଦ୍ଧରେ। ବଡ଼ ଦୁଃଖର ସହିତ ମୋତେ କହିବାକୁ ପଡୁଛି, ଦେଶ ସ୍ୱାଧୀନ ହେବାର ୪୭ ବର୍ଷ ପରେ ମଧ୍ୟ ବହୁ ସାମାଜିକ କଳଙ୍କରୁ ଆମେ ମୁକ୍ତ ହୋଇପାରି ନାହୁଁ। ଯୌତୁକ ବ୍ୟାଧି ଏବେ ମଧ୍ୟ ସମାଜର କି ଶିକ୍ଷିତ, କି ଅଶିକ୍ଷିତ, କି ଧନୀ, କି ଗରିବ ସମସ୍ତଙ୍କୁ କବଳିତ କରିଛି। ସେଥିପାଇଁ ସମାଜରେ ବଧୂହତ୍ୟା ଓ ନାରୀ ନିର୍ଯ୍ୟାତନାର ସୀମା ନାହିଁ। କେତେଦିନ ଚାଲିଥିବ ଏ ଜଘନ୍ୟ କାରବାର ? ଆମ ଯୁବକ ଯୁବତୀଙ୍କ ଭିତରେ କ'ଣ ସଚେତନତା ଆସିବ ନାହିଁ ? ସେହିପରି, ସମାଜରେ, ବିଶେଷ କରି ଆଦିବାସୀ ସମାଜରେ ଶୋଷଣ ଓ ଦାରିଦ୍ର୍ୟର ଅନ୍ୟ ଏକ ବଡ଼ କାରଣ ହେଉଛି ମଦ। ଏହାକୁ ଦୂର କରିବା ପାଇଁ ମୁଁ ସାରା ରାଜ୍ୟରେ ଦେଶୀ ମଦର ପ୍ରସ୍ତୁତି ଓ ବିକ୍ରି ନିଷିଦ୍ଧ କରିଛି। ଏଥିପାଇଁ ଓଡ଼ିଶା ରାଜକୋଷରୁ ବର୍ଷକୁ ୫୦ କୋଟି ଟଙ୍କା ହରାଇବାକୁ ପଡୁଛି। କିନ୍ତୁ ଆନନ୍ଦର କଥା, ଏ ଦିଗରେ ମହିଳାମାନଙ୍କ ଭିତରେ ଅପୂର୍ବ ଜାଗରଣ ଦେଖା ଯାଉଛି। ରାଜ୍ୟର ବିଭିନ୍ନ ଅଞ୍ଚଳରେ ମହିଳାମାନେ ଦେଶୀ ମଦଭାଟି ଭାଙ୍ଗିବା ପାଇଁ ଅଣ୍ଟାଭିଡ଼ି ବାହାରିଛନ୍ତି। ମୋର

ଦୃଢ଼ ବିଶ୍ୱାସ, ସାରା ରାଜ୍ୟରେ ମଦ ବିରୁଦ୍ଧରେ ଏହିପରି ଜାଗରଣ ସୃଷ୍ଟି ହେବ ଓ ସମାଜ ଏହି ମଦ ରାକ୍ଷସ କବଳରୁ ମୁକ୍ତି ଲାଭ କରିବ । କେବଳ ଏତିକି ନୁହେଁ, ଅନ୍ଧ ବିଶ୍ୱାସ, କୁସଂସ୍କାର, ଯୌତୁକ, ନିରକ୍ଷରତା ଓ ଜନସଂଖ୍ୟା ବୃଦ୍ଧି ଆଦି ସାମାଜିକ କଳଙ୍କ ବିରୁଦ୍ଧରେ ମଜବୁତ୍ ଗଣ ଆନ୍ଦୋଳନ ଗଢ଼ି ତୋଳିବାକୁ ପଡ଼ିବ । ମୋର ବିଶ୍ୱାସ, ମୋ ରାଜ୍ୟର ଅଗଣିତ ଯୁବକ ଯୁବତୀ ଏହି ଆନ୍ଦୋଳନରେ ସାମିଲ ହୋଇ ଏକ ସୁସ୍ଥ ସୁନ୍ଦର ସମାଜ ତିଆରି କରିବେ ।

ଆମକୁ ଆଜି ଦେଶର ସଂହତି ଓ ସମୃଦ୍ଧି ବିଷୟରେ ମଧ୍ୟ ଚିନ୍ତା କରିବାକୁ ହେବ । ଆମର ଇତିହାସ ପାଞ୍ଚ ହଜାର ବର୍ଷର ଇତିହାସ । ବହୁ ଭାଷା, ଧର୍ମ, ଜାତିର ଲୋକେ ଆଦରି ନେଇଛନ୍ତି ଏ ଦେଶର ମାଟିକୁ । ଭାରତବର୍ଷ ସଂହତିର ଦେଶ । କିନ୍ତୁ କିଛି ଶକ୍ତି ଆଜି ଧର୍ମ ନାଁରେ, ଭାଷା ନାଁରେ, ଜାତି ନାଁରେ ବିଭେଦ ସୃଷ୍ଟି କରିବାକୁ ପଛାଉ ନାହାନ୍ତି । ଏହି ଶକ୍ତିଗୁଡ଼ିକ ପ୍ରତି ଆମକୁ ସତର୍କ ରହିବାକୁ ପଡ଼ିବ । ଭାରତବର୍ଷର ଏକତା ଓ ସଂହତିକୁ ଯେ କୌଣସି ମୂଲ୍ୟ ଦେଇ ରକ୍ଷା କରିବାକୁ ପଡ଼ିବ । ସେଥିପାଇଁ ଦରକାର ଅଧିକ ସଦ୍‌ଭାବ, ଅଧିକ ସହନଶୀଳତା । ମୁଁ ଆଶା କରିବି, ଆମ ଭିତରେ ସହନଶୀଳତା ଓ ସଦ୍‌ଭାବ ବଜାୟ ରହିବ ।

ଅର୍ଥନୈତିକ ସ୍ୱାଧୀନତା ବିନା ରାଜନୈତିକ ସ୍ୱାଧୀନତାର ମାନେ କିଛି ହୁଏ ନାହିଁ । ଆମେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମରେ ଲଢ଼େଇ କରୁଥିବା ବେଳେ "ସ୍ୱଦେଶୀ" କଥା କହୁଥିଲୁ, "ଆତ୍ମ ନିର୍ଭରତା" କଥା କହୁଥିଲୁ । ଆମର ପ୍ରଚୁର ପ୍ରାକୃତିକ ସଂପଦ ସତ୍ତ୍ୱେ ଆଜି ଆମର ଯୁବକ ଯୁବତୀ ବେକାର – ଆମେ ଗରିବ । ବିଦେଶୀ ସାହାଯ୍ୟ ବିନା ଆମେ ପ୍ରଗତି କଥା ଚିନ୍ତା କରିପାରୁ ନାହୁଁ । ଜନସଂଖ୍ୟା ବୃଦ୍ଧି ହିଁ ଆମକୁ ଦାରିଦ୍ର୍ୟର ଅତଳ ଗହ୍ୱର ଭିତରକୁ ଟାଣି ନେଉଛି । ଏ ସବୁ ସମସ୍ୟାର ମୁକାବିଲା ପାଇଁ ଆମ ଯୁବକ ଯୁବତୀଙ୍କ ଭିତରେ ସ୍ୱାଧୀନତା ସଂଗ୍ରାମ ବେଳର ସାହସ ଓ ଶୃଙ୍ଖଳା ଜାଗ୍ରତ ହେବ ବୋଲି ମୋର ଦୃଢ଼ ବିଶ୍ୱାସ ।

ତେଣୁ, ମୁଁ ମୋ ରାଜ୍ୟର ଭାଇ ଭଉଣୀ, ପିଲାଛୁଆ, ନାତି ନାତୁଣୀ ସମସ୍ତଙ୍କୁ ଅନୁରୋଧ କରିବାକୁ ଚାହେଁ, ସମସ୍ତେ ସାହସ ଓ ଶୃଙ୍ଖଳା ନେଇ ଦେଶ ଗଠନ କାର୍ଯ୍ୟରେ ସହଯୋଗ କରନ୍ତୁ । ଏହାଦ୍ୱାରା ସୁନାର କଳିଙ୍ଗ ଓ ସୁନାର ଭାରତ ଗଠନର ସ୍ୱପ୍ନ ସାକାର ହେବ, ଦେଶର ସ୍ୱାଧୀନତା ଓ ସଂହତି ଚିରସ୍ଥାୟୀ ହେବ ଏବଂ ଭାରତବର୍ଷ ସାରା ବିଶ୍ୱରେ ଏକ ମହାନ୍ ଶକ୍ତି ରୂପେ ମୁଣ୍ଡ ଟେକି ଠିଆ ହେବ ।

ଜୟହିନ୍ଦ୍ ।



## ସ୍ୱାଧୀନତା ଦିବସ ଉପଲକ୍ଷେ
## ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ
# ଶ୍ରୀ ବୈରାଗୀ ଜେନାଙ୍କ
# ବାର୍ତ୍ତା

୪୮ ତମ ସ୍ୱାଧୀନତା ଦିବସ ପାଳନ ଅବସରରେ ଓଡ଼ିଶାର ଜନସାଧାରଣଙ୍କୁ ମୁଁ ମୋର ହାର୍ଦ୍ଦିକ ଶୁଭେଚ୍ଛା ଜଣାଇବା ନିମନ୍ତେ ସୁଯୋଗ ପାଇ ଥିବାରୁ ନିଜକୁ ଧନ୍ୟ ମନେ କରୁଛି । ଏହା ବ୍ୟତୀତ ଯେଉଁ ସ୍ୱାଧୀନତା ସଂଗ୍ରାମୀମାନଙ୍କର ତ୍ୟାଗ ଓ ଉତ୍ସର୍ଗୀକୃତ ଅବଦାନ ଯୋଗୁଁ ଆମେ ସ୍ୱାଧୀନତାର ଆଲୋକ ସନ୍ଦର୍ଶନ କଲୁ, ସେମାନଙ୍କ ଉଦ୍ଦେଶ୍ୟରେ ଆଜିର ଏହି ଶୁଭ ଅବସରରେ ମୁଁ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଶାନ୍ତି ଓ ସୌହାର୍ଦ୍ଦ୍ୟ ମଧ୍ୟରେ ଆମେ ଯେଉଁ ଐକ୍ୟ ପ୍ରତିଷ୍ଠା କରିଛୁ, ତା'ର ବିଲୟ ସାଧନ କରିବା ଲାଗି ଆଜିକାଲି ଯେଉଁ ବିଭେଦକାରୀ ଶକ୍ତି ମୁଣ୍ଡ ଟେକି ଉଠୁଛି, ତାକୁ ପ୍ରତିହତ କରି ଆମର କଷ୍ଟଲବ୍ଧ ଗଣତାନ୍ତ୍ରିକ ପରମ୍ପରା ଓ ମୂଲ୍ୟବୋଧର ସୁରକ୍ଷା କରିବା ହେଉଛି ଆମ ସମସ୍ତଙ୍କର ନୈତିକ ଦାୟିତ୍ୱ ।

ସାମାଜିକ ନ୍ୟାୟ ପ୍ରତିଷ୍ଠା କରି ସମାଜର ଦୁର୍ବଳ ଶ୍ରେଣୀର ଜନସାଧାରଣଙ୍କର ସାମାଜିକ ତଥା ଅର୍ଥନୈତିକ ବିକାଶ ସାଧନ କରିବା ସଙ୍ଗେ ସଙ୍ଗେ ସମାଜରେ ମହିଳାମାନଙ୍କର ସ୍ଥିତିର ଗୁଣାତ୍ମକ ମାନର ବିକାଶ ଦିଗରେ, ଆମମାନଙ୍କୁ ଅନେକ କିଛି କରିବାର ଅଛି ।

ତେବେ ଆସନ୍ତୁ, ଆଜିର ଏହି ଶୁଭ ଅବସରରେ ଆମର ଜନ୍ମଭୂମି ନାମରେ ଶପଥ ନେଇ ବହୁ ବାଧାବିଘ୍ନ ସତ୍ତ୍ୱେ ହାତକୁ-ହାତ ମିଳାଇ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ପଥେ ଆଗେଇ ଯିବା ।

ଜୟହିନ୍ଦ୍ ।

# ସମ୍ପାଦକୀୟ

## ସ୍ୱାଧୀନତା ଦିବସର ସଂକଳ୍ପ : ଜାତୀୟ ଐକ୍ୟ

ପୁଣ୍ୟଭୂମି ଭାରତର ଆଜି ପବିତ୍ର ସ୍ୱାଧୀନତା ଦିବସ । ୪୭ ବର୍ଷ ପୂର୍ବେ ଆଜିର ଦିବସରେ ଅର୍ଥାତ୍ ୧୯୪୭ ଅଗଷ୍ଟ ୧୫ ତାରିଖରେ ଆମ ଦେଶ ପରାଧୀନତାର ଶୃଙ୍ଖଳରୁ ମୁକ୍ତ ହୋଇ ସ୍ୱାଧୀନତା ହାସଲ କରିଥିଲା । ସୁନାର ଭାରତ ଗଢ଼ିବା ପାଇଁ ଦେଶକୁ ସଜାଡ଼ିବା ଦାୟିତ୍ୱ ଏବଂ ଦେଶର ଶାସନ କ୍ଷମତା ଆମ ଲୋକଙ୍କ ହାତକୁ ଆସିଥିଲା । ଏହି ପବିତ୍ର ସ୍ୱାଧୀନତା ଦିବସଟି ଭାରତର ପ୍ରତ୍ୟେକ ନାଗରିକଙ୍କ ପାଇଁ ଏକ ସ୍ମରଣୀୟ ତଥା ପବିତ୍ର ଦିବସ ।

ସ୍ୱାଧୀନତା ସଂଗ୍ରାମର ପୁରୋଧା ମହାତ୍ମା ଗାନ୍ଧୀଙ୍କ ସ୍ୱପ୍ନ ଥିଲା ଆମ ଦେଶର ଶାସନ କ୍ଷମତା ଆମ ଲୋକଙ୍କ ହାତକୁ ଆସିଲେ ଦେଶରେ "ରାମ ରାଜ୍ୟ" ପ୍ରତିଷ୍ଠା ହୋଇପାରିବ । ସେହି ସ୍ୱପ୍ନ ସାକାର ହେବା ପୂର୍ବରୁ ସ୍ୱାଧୀନତା ପ୍ରାପ୍ତିର ଅଳ୍ପ କେତୋଟି ଦିନ ପରେ ବାପୁଜୀ ଶହୀଦ୍ ହୋଇଗଲେ । ଆଜକୁ ୪୭ ବର୍ଷ ବିତି ଯାଇଥିଲେ ସୁଦ୍ଧା "ବାପୁଜୀଙ୍କ ପରିକଳ୍ପିତ ରାମ ରାଜ୍ୟ" ସ୍ୱପ୍ନରେ ହିଁ ରହିଛି ।

ସ୍ୱାଧୀନତା ପ୍ରାପ୍ତି ପାଇଁ ଆମର ମୂଳମନ୍ତ୍ର ଥିଲା ଏକତା । କାଶ୍ମୀରଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଦେଶର କୋଟି କୋଟି ଲୋକ ଗୋଟିଏ ସ୍ୱରରେ ଭାରତମାତାର ଜୟଗାନ କରୁଥିଲେ । କିନ୍ତୁ ସ୍ୱାଧୀନତା ପ୍ରାପ୍ତି ପରେ ସେଥିରେ ବ୍ୟତିକ୍ରମ ଘଟିଛି । ଜାତୀୟ ଐକ୍ୟ ଆଜି ବିପନ୍ନ । ଭାରତମାତାର ଜୟଗାନ କରିବା ପରିବର୍ତ୍ତେ ଭାରତମାତାକୁ ଖଣ୍ଡ ବିଖଣ୍ଡ କରିବା ପାଇଁ ଆଜି ବିଭିନ୍ନ ସ୍ଥାନରେ ବିଚ୍ଛିନ୍ନତାବାଦ ମୁଣ୍ଡଟେକି ଉଠିଛି ।

ସୁଖର କଥା, ଓଡ଼ିଶାବାସୀଙ୍କ ସୌଭାଗ୍ୟକୁ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ନେତା ବିଜୁବାବୁ ଓଡ଼ିଶାର ଶାସନ ଭାର ଗ୍ରହଣ କରିଥିବାରୁ ଏହି ସଂକ୍ରାମକ ବ୍ୟାଧି ଓଡ଼ିଶାରେ ସଂକ୍ରମିତ ହୋଇ ପାରିନାହିଁ । ମହାତ୍ମା ଗାନ୍ଧୀଙ୍କ ପରିକଳ୍ପିତ "ରାମ ରାଜ୍ୟ"ର ପ୍ରତିଷ୍ଠା ପାଇଁ ବିଜୁବାବୁ କ୍ଷମତାର ବିକେନ୍ଦ୍ରୀକରଣ କରିବା ଫଳରେ ଗାଁ ସରପଞ୍ଚ ବର୍ତ୍ତମାନ ଗାଁର ମୁଖ୍ୟମନ୍ତ୍ରୀ ପାଲଟି ପାରିଛି । ଗାଁକୁ ସୁନ୍ଦର କରି ଗଢ଼ିବା ପାଇଁ ସରପଞ୍ଚମାନେ ଆଜି ସମର୍ଥ ହୋଇ ପାରିଛନ୍ତି । ସେହିପରି ସହରଗୁଡ଼ିକର ବିକାଶ ପାଇଁ ନଗରପାଳମାନଙ୍କ ହାତରେ କ୍ଷମତା ଅର୍ପଣ କରାଯାଇଛି । ନିକଟରେ ଜିଲ୍ଲା ପରିଷଦ ଗଠନ କରିବା ପାଇଁ ମଧ୍ୟ ବିଜୁବାବୁ ନିଷ୍ପତ୍ତି ନେଇ ସାରିଛନ୍ତି । କେବଳ ସେତିକି ନୁହେଁ, ପରଦା ଆଢୁଆଳରେ ରହି ଆସିଥିବା ମହିଳାମାନେ ଆଜି ଶାସନର ପ୍ରତ୍ୟେକ ସ୍ତରରେ ପ୍ରବେଶ କରିବା ଅଧିକାର ପାଇ ପାରିଛନ୍ତି ।

ବିଜୁବାବୁଙ୍କର ଏହି ସବୁ ଐତିହାସିକ ପଦକ୍ଷେପ ନିଶ୍ଚିତ ଭାବେ ଗାନ୍ଧିଜୀଙ୍କ ପରିକଳ୍ପିତ ରାମ ରାଜ୍ୟର ପ୍ରଥମ ପାହାଚ । ତେବେ ଆମ ସୁବିଧା, ଆମ ଅଧିକାର ପ୍ରତି ଆମେ ସଚେତନ ରହିବା ସଚେତନ ହେବା ସାଙ୍ଗକୁ ଆମର ଦାୟିତ୍ୱ ପ୍ରତି ମଧ୍ୟ ଆମେ ସଚେତନ ରହିବା ଆବଶ୍ୟକ । ବିଜୁବାବୁଙ୍କ ସମସ୍ତ ପଦକ୍ଷେପର ସଫଳ ରୂପାୟନ ଆଜି ଆମ ସମସ୍ତଙ୍କ ଉପରେ ନ୍ୟସ୍ତ । ଏହାର ଗୁରୁତ୍ୱ ହୃଦୟଙ୍ଗମ କରି ପବିତ୍ର ସ୍ୱାଧୀନତା ଦିବସ ଅବସରରେ ଆମର ଜାତୀୟ ପତାକା ତଳେ ସମସ୍ତେ ଏକତ୍ରିତ ହୋଇ ସ୍ୱାଧୀନତା ସଂଗ୍ରାମରେ ଆତ୍ମବଳୀ ଦେଇଥିବା ଆମର ପୂର୍ବପୁରୁଷମାନଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସଙ୍ଗେ ସଙ୍ଗେ ସବୁ ଭେଦଭାବ ଭୁଲି ଜାତୀୟ ଐକ୍ୟର ସୁରକ୍ଷା ପାଇଁ ସଂକଳ୍ପବଦ୍ଧ ହୋଇପାରିଲେ, ତାହାହିଁ ହେବ ପ୍ରକୃତ "ରାମ ରାଜ୍ୟ" ।

# ମନର ମୂଳେ ଏ ଜଗତ


* ଡାକ୍ତର (ଶ୍ରୀମତୀ) କମଳା ଦାସ *


କିଥାରେ ଅଛି "ମନର ମୂଳେ ଏ ଜଗତ" । ମନ ଇଚ୍ଛା କଲେ ଧ୍ୱଂସ କରିନପାରେ । ଭଗବତ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି–ଇନ୍ଦ୍ରିୟମାନଙ୍କ ମଧ୍ୟରେ ମୁଁ ହେଉଛି ମନ । ଏହି ମନକୁ ନିଜ ଆୟତ୍ତରେ ମନୁଷ୍ୟ ରଖିପାରିଲେ, ଅସାଧ୍ୟ ସାଧନ ହୋଇପାରିବ । ମନୁଷ୍ୟ ଈଶ୍ୱରଙ୍କର ସର୍ବଶ୍ରେଷ୍ଠ ସର୍ଜନା । ମନକୁ ଆୟତ୍ତରେ ରଖି ବୁଦ୍ଧି ଓ ଜ୍ଞାନ ବଳରେ ମନୁଷ୍ୟ ଦେବତା ସ୍ତରକୁ ଉନ୍ନୀତ ହୋଇ ଶାଶ୍ୱତ ଶାନ୍ତି ଲାଭ କରିପାରିବ । ଏହାକୁ ଆୟତ୍ତାଧୀନ ନକଲେ, ମାନବ ସମାଜର ଚରମ ଅଧୋଗତି ଏବଂ ସର୍ବନାଶ ହୋଇଥାଏ ।

ବିଶ୍ୱ ଜଗତ୍ତୁ ତ ପ୍ରକୃତରେ ଏ ମନ କାହାକୁ ଖୋଜୁଛି । ତାହାପାଇଁ ଏତେ ଧର୍ମ, କର୍ମ, ଜ୍ଞାନ ଓ ସାଧନାରେ ମନୁଷ୍ୟ ମଜି ରହୁଛି । କେବଳ ଜୀବନକାଳ ମଧ୍ୟରେ ପରମ ଶାନ୍ତି ପାଇବା ପାଇଁ ଏ ସକଳ ପ୍ରକାର ସାଧନା । କିନ୍ତୁ ବିଜ୍ଞାନର ଯେତେ ଅଗ୍ରଗତି ହେଉଛି, ମନୁଷ୍ୟ ଶାନ୍ତି ବଦଳରେ ଘୋର ସଙ୍କଟ ମଧ୍ୟକୁ ପ୍ରବେଶ କରିଯାଉଥିବାର ଲକ୍ଷ୍ୟ କରାଯାଉଛି । ଆଜି ଚତୁର୍ଦ୍ଦିଗରେ ହା ହା କାର । ଆର୍ଥିକ, ନୈତିକ, ସାମାଜିକ ତଥା ରାଜନୈତିକ ସଙ୍କଟମାନ ଏ ବିଶ୍ୱକୁ ଗ୍ରାସ କରିବାକୁ ବସିଛି । ଏ ସମସ୍ତ ସଙ୍କଟର ଜନକ ହେଲା– ଜନସଂଖ୍ୟା ବୃଦ୍ଧି । ବିପୁଳ ଜନସଂଖ୍ୟା ବୃଦ୍ଧି ଅଛି ବିଶ୍ୱର ଦୁଃଖର କାରଣ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି ଏ ଭୟାବହ ସଙ୍କଟରୁ ପରିତ୍ରାଣ ପାଇବାର ଉପାୟ ଚିନ୍ତା କରିବା ଆବଶ୍ୟକ । ସେଥିପାଇଁ ସାରା ବିଶ୍ୱରେ ଜୁଲାଇ ୧୧ ତାରିଖ ଦିନଟି ଜନବିସ୍ଫୋରଣ ସମ୍ପର୍କରେ ଚିନ୍ତା କରିବା ପାଇଁ 'ବିଶ୍ୱ ଜନସଂଖ୍ୟା ଦିବସ' ରୂପେ ସର୍ବତ୍ର ପାଳନ କରାଯାଉଛି ।

ପ୍ରଥମେ ଚିନ୍ତା କରାଯାଉ, ଏ ଜନସଂଖ୍ୟା ଏତେ ଦ୍ରୁତଗତିରେ ବଢ଼ିଲା କାହିଁକି ? ଅତୀତରେ ଏପରି ନଥିଲା । ଲୋକମାନେ ସନ୍ତାନ ସନ୍ତତି ପାଇଁ କେତେ ଧର୍ମ, କର୍ମ ଓ ଯାଗଯଜ୍ଞ କରୁଥିଲେ । କେହି କେହି ଶତପୁତ୍ର ପାଇଁ ମଧ୍ୟ ଦେବତାମାନଙ୍କୁ ପ୍ରାର୍ଥନା କରୁଥିଲେ । ପୁରାଣ ଇତିହାସରୁ ଆଲୋଚନା କଲେ ଆମେ ଦେଖିବା ଯେ, ଏହି ଯୁଗମାନଙ୍କରେ ଜନ୍ମହାର ଅପେକ୍ଷା ମୃତ୍ୟୁହାର ଅଧିକ ଥିଲା । ମହାମାରୀ, ପ୍ରାକୃତିକ ବିପର୍ଯ୍ୟୟ ଓ ଯୁଦ୍ଧ ପ୍ରଭୃତି ଦ୍ୱାରା ବିପୁଳ ଜନକ୍ଷୟ ବାରମ୍ବାର ହୋଇ ଜନସଂଖ୍ୟା ବଢ଼ି ପାରୁନଥିଲା । ଲୋକେ ଦୁଃଖ, ସୁଖ, ସନ୍ତାନ ସନ୍ତତି, ରୋଗଭୋଗ ପ୍ରଭୃତିକୁ ଈଶ୍ୱରଙ୍କ ଦାନ ଭାବି ନିଶ୍ଚିନ୍ତ ରହୁଥିଲେ ।

କିନ୍ତୁ ବର୍ତ୍ତମାନ ଜନସଂଖ୍ୟା ବୃଦ୍ଧିର ପ୍ରଧାନ କାରଣମାନ ହେଲା–

ରୋଗ ନିରାକରଣ ପାଇଁ ଫଳପ୍ରଦ ଚିକିତ୍ସା, ପରିବାରଗୁଡ଼ିକର ଆର୍ଥିକ ଦୁର୍ବଳତା, ନିରକ୍ଷରତା, ଜନସଚେତନତାର ଅଭାବ, ଅଳ୍ପ ବୟସରେ ବିବାହ, କୁସଂସ୍କାର ଓ ଅନ୍ଧବିଶ୍ୱାସ, ପୁତ୍ରଟିଏ ପାଇବା ପାଇଁ ଦୃଢ଼ ଆଶା, ଜନ୍ମନିୟନ୍ତ୍ରଣ ପଦ୍ଧତି ଗ୍ରହଣ ପାଇଁ ଆଗ୍ରହଶୂନ୍ୟତା ।

ଜନସଂଖ୍ୟା ଦୃଷ୍ଟିରୁ ବିଶ୍ୱରେ ଭାରତର ସ୍ଥାନ ହେଲା ଦ୍ୱିତୀୟ (ଚୀନ୍ ପ୍ରଥମ) । ଏଠାରେ ବିଶ୍ୱର ୧୦୦ ଭାଗରୁ ୧୬ ଭାଗ ଲୋକ ବାସ କରନ୍ତି । ମାତ୍ର ସ୍ଥଳଭାଗ କେବଳ ୨.୪ ଶତାଂଶ । ସ୍ୱାଧୀନତା ପରଠାରୁ ଭାରତବର୍ଷର ଜନସଂଖ୍ୟା ୨ ଗୁଣରୁ ଅଧିକ ବୃଦ୍ଧି ପାଇଛି । ଆମ ପ୍ରଦେଶ ୧୯୩୬ ମସିହାରେ ସ୍ୱତନ୍ତ୍ର ହେଲା । ସେତେବେଳେ ଜନସଂଖ୍ୟା ଥିଲା ୧.୦୩ କୋଟି । କିନ୍ତୁ ତାହା ପ୍ରାୟ ୩ ଗୁଣ ବୃଦ୍ଧି ପାଇଁ ୩.୫୦ କୋଟି ହୋଇଛି । ଆମ ରାଜ୍ୟରେ ପ୍ରତ୍ୟେକ ଦଶନ୍ଧିରେ ଜନସଂଖ୍ୟା କିପରି ବଢ଼ିଚାଲିଛି, ତା'ର ନମୁନା ଏହିପରି ।

| ମସିହା | ଜନସଂଖ୍ୟା (କୋଟିରେ) |
|---|---|
| ୧୯୫୧ | ୧.୪୬ |
| ୧୯୬୧ | ୧.୭୫ |
| ୧୯୭୧ | ୨.୧୯ |
| ୧୯୮୧ | ୨.୬୪ |
| ୧୯୯୧ | ୩.୧୬ |

ଶିକ୍ଷା, ଶିଳ୍ପ ଓ ଅର୍ଥନୈତିକ ଦୃଷ୍ଟିକୋଣରୁ ଓଡ଼ିଶାର ସ୍ଥାନ ଅନ୍ୟ ପ୍ରଦେଶମାନଙ୍କ ତୁଳନାରେ ବହୁପଛରେ । ଯଦି ଉପରୋକ୍ତ ହାରରେ ଲୋକସଂଖ୍ୟା ବଢ଼ିଚାଲେ, ତେବେ ଆମର ଗତି ଯେ, କେଉଁଆଡ଼କୁ ତାହା ସହଜରେ ଅନୁମେୟ ।

ଜନସଂଖ୍ୟା ବୃଦ୍ଧିର କାରଣ ଯାହାହେଉନା କାହିଁକି, ଆମେମାନେ ପ୍ରତ୍ୟେକ ସ୍ତରରେ ଏହାର ଆଶୁ ପ୍ରତିକାର ବିଷୟ ଚିନ୍ତାକରି ପ୍ରଥମେ ଏହି ବୃଦ୍ଧିହାରକୁ ସ୍ଥିର ରଖି ଧୀରେ ଧୀରେ ଏହାକୁ କମାଇବାକୁ ପଡ଼ିବ । ପ୍ରତିକାରର ମୁଖ୍ୟ ଉପାୟଗୁଡ଼ିକ ହେଲା –

ନାରୀ ଶିକ୍ଷାର ଅଧିକ ପ୍ରସାର ଘଟାଇବା ସଙ୍ଗେ ସଙ୍ଗେ କର୍ମନିଯୋଗର ସୁଯୋଗ ସୃଷ୍ଟି କରିବା ଏବଂ ଦମ୍ପତିମାନଙ୍କୁ ପରିବାର କଲ୍ୟାଣ ସମ୍ପର୍କରେ ସଚେତନ କରାଇବା ।

ଆଇନଗତ ଦୃଷ୍ଟିରୁ ଝିଅମାନଙ୍କର ବିବାହ ବୟସ ୧୮ ଏବଂ ପୁଅମାନଙ୍କର ୨୧ ହୋଇଥିଲେ ସୁଦ୍ଧା ଝିଅକୁ ୨୦ ବର୍ଷ ଓ ପୁଅକୁ ୨୫ ବର୍ଷ ପୂରିବା ପରେ ହିଁ ସେମାନଙ୍କର ବିବାହ କରିବା ଉଚିତ । ଏହା ବ୍ୟତୀତ ବିବାହର ଅନ୍ୟୂନ ୨ ବର୍ଷପରେ ପ୍ରଥମ ସନ୍ତାନଟି କୋଳରେ ଆସିଲେ ଖୁବ୍ ଭଲ ।

ଦୁଇଟି ସନ୍ତାନ ମଧ୍ୟରେ ଅତି କମ୍‌ରେ ୫ବର୍ଷର ବ୍ୟବଧାନ ରକ୍ଷାକରିବା ।

ସନ୍ତାନ ଜନ୍ମକ୍ଷମ ସମୟ ସର୍ବୋଚ୍ଚ ୨୫ ବର୍ଷରୁ ୩୫ ବର୍ଷ ବୟସ ମଧ୍ୟରେ ହୋଇଥିବାରୁ ଦମ୍ପତିମାନଙ୍କ ମଧ୍ୟରୁ ଯେ କେହି ସ୍ଥାୟୀ ଜନ୍ମନିରୋଧ ପଦ୍ଧତି ଗ୍ରହଣ କରିବା ଉଚିତ । ମହିଳା ଗର୍ଭନିରୋଧ ଅସ୍ତ୍ରୋପଚାର ଅପେକ୍ଷା ପୁରୁଷ ଅସ୍ତ୍ରୋପଚାର ଅଧିକ ସହଜ, ସରଳ ଓ ନିରାପଦ ହୋଇଥିବାରୁ ପୁରୁଷମାନେ ଏଥିପ୍ରତି ସ୍ୱେଚ୍ଛାରେ ଆଗେଇ ଆସିବା ବାଞ୍ଛନୀୟ ।

ମା' ଓ ଶିଶୁର ଉପଯୁକ୍ତ ଯତ୍ନ ନିଆଯାଇ ପାରିବାରିକ ସ୍ୱାସ୍ଥ୍ୟର ଯତ୍ନ ନେବା ଏବଂ ପୁଅ ଝିଅ ମଧ୍ୟରେ ଭେଦଭାବ ଓ ବହୁ ସନ୍ତାନ ଲାଭର ଅଭିଳାଷ ଦୂର କରିବା ।

ଜନସଂଖ୍ୟା ନିୟନ୍ତ୍ରଣ ଏବଂ ପରିବାର କଲ୍ୟାଣ ଏକ ମହାନ୍, କଷ୍ଟସାଧ୍ୟ ଓ ସ୍ଥାୟୀ କାର୍ଯ୍ୟକ୍ରମ ହୋଇଥିବାରୁ ଏହି କାର୍ଯ୍ୟକ୍ରମରେ ଜାତି, ଧର୍ମ, ଲିଙ୍ଗ ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି ବିଶେଷକରି ନିଃସ୍ୱାର୍ଥପର ତଥା ନିଷ୍ଠାପର ଯୁବଗୋଷ୍ଠୀର ପୂର୍ଣ୍ଣପ୍ରାଣରେ ସହଯୋଗ ।

ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକ ପରିବାର କଲ୍ୟାଣ ପରି ବହୁମୁଖୀ ଜନହିତୈଷୀ କାର୍ଯ୍ୟକ୍ରମମାନଙ୍କରେ ସକ୍ରିୟ ଅଂଶ ଗ୍ରହଣ ।

ସରକାରୀ ସ୍ତରରେ ପରିବାର କଲ୍ୟାଣ କାର୍ଯ୍ୟରେ ପ୍ରତ୍ୟକ୍ଷ ସମସ୍ତ ପ୍ରତିବନ୍ଧକଗୁଡ଼ିକର ଦୂରୀକରଣ ।

ଏହି କାର୍ଯ୍ୟକ୍ରମରେ ଭାଗ ନେଉଥିବା ସରକାରୀ ଓ ବେସରକାରୀ କର୍ମଚାରୀମାନଙ୍କୁ ଉପଯୁକ୍ତ ପ୍ରୋତ୍ସାହନ ପ୍ରଦାନ ।

ଜନସଂଖ୍ୟା ନିୟନ୍ତ୍ରଣ ପାଇଁ ଆହୁରି ଅନେକ ଉପାୟ ସ୍ଥାନ, କାଳ ଓ ପାତ୍ର ଅନୁସାରେ ଚିନ୍ତା କରାଯାଇପାରେ । କଥାରେ ଅଛି– ବିଳମ୍ବେ କାର୍ଯ୍ୟସିଦ୍ଧି । ସେହିଦୃଷ୍ଟିରୁ ବିଚାର କଲେ, ପ୍ରକୃତରେ ଉକ୍ତ କାର୍ଯ୍ୟକ୍ରମ ସମୟସୀମା ମଧ୍ୟରେ କରିପାରି ନଥିଲେ ମଧ୍ୟ ଆମେ ନିକଟ ଭବିଷ୍ୟତରେ ଦୃଢ଼ ପଦକ୍ଷେପ ଦ୍ୱାରା ଏହାକୁ ସଫଳ କରିପାରିବା । ଲୋକମାନଙ୍କ ଆର୍ଥିକ ବାଛେ, ଶିକ୍ଷା ଓ ସ୍ୱାସ୍ଥ୍ୟ ପ୍ରଭୃତିର ଅବସ୍ଥା ଧୀରେ ଧୀରେ ଉନ୍ନତ ହେବା ସଙ୍ଗେ ସଙ୍ଗେ ଏପରି ଏକ ଅବସ୍ଥା ଆସି ପହଞ୍ଚିବ, ଯେତେବେଳେ ଆମେ ଆମର ବାଞ୍ଛିତ ଜନସଂଖ୍ୟା ପରିଶୁଦ୍ଧନା କରିପାରିବା । ଜନସଂଖ୍ୟା ହ୍ରାସ ଓ ସ୍ଥିର ହୋଇପାରିଲେ, ଖାଲି ପରିବାର ନୁହେଁ, ଦେଶ ତଥା ବିଶ୍ୱର ସକଳ ସଙ୍କଟ ଦୂରହୋଇ ନିଶ୍ଚିତ ଶାନ୍ତି ବିରାଜମାନ କରିବ ।

ସେତେବେଳେ ଆମେ ଭାଗବତର ବାଣୀ ମୁକ୍ତକଣ୍ଠରେ ଗାନ କରିବା :

"ଏ ମନ ଖୋଜୁଥାଏ ଯାହା
କାଳେ ପ୍ରାପତ ହୁଏ ତାହା ।"

---

ମନ୍ତ୍ରୀ,
ପରିବାର କଲ୍ୟାଣ, ଓଡ଼ିଶା ।



ଦରୋଇ ବିଭାଗର ଏକ ଅଣଆନୁଷ୍ଠାନିକ ଉପଦେଷ୍ଟା କମିଟି ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଲୋକସଭା ସଦସ୍ୟ ଓ ବିଧାନସଭା ସଦସ୍ୟମାନଙ୍କ ସହିତ ଆଲୋଚନା କରୁଛନ୍ତି ।

# ଜାତୀୟ ବୀର ଧରଣୀଧର

* ଶ୍ରୀ ଜଗବନ୍ଧୁ ପାଢ଼ୀ *

ଓଡ଼ିଶାର ଭାଷା ଓ ସାହିତ୍ୟ କ୍ଷେତ୍ରରେ ଅନୁପମ ଅବଦାନ ଦେଇ ଜାତିର ବରପୁତ୍ର ଭାବରେ ସମ୍ମାନ ଅର୍ଜନ କରିଥିବା ଓ ନିଜର ଅତୁଳ କାବ୍ୟକୃତି ମାଧ୍ୟମରେ ବ୍ୟାସକବି ପଦବୀ ଲାଭ କରିଥିବା ଫକୀର ମୋହନ ସେନାପତି ନିଜର ଆତ୍ମ ଜୀବନ ଚରିତରେ ଭୂୟାଁ ଜନନାୟକ ଧରଣୀଧର ନାୟକଙ୍କୁ ଯେଉଁଭଳି ଚିତ୍ରଣ କରିଥାଆନ୍ତୁ ପଛେ, ଗତ ଶତାବ୍ଦୀର ଅନ୍ତିମ ଭାଗରେ ଧରଣୀଧରଙ୍କ ଦ୍ୱାରା ସଂଗଠିତ ହୋଇଥିବା ସ୍ୱନାମ ପ୍ରସିଦ୍ଧ ବିଦ୍ରୋହର ଅନ୍ତର୍ନିହିତ ଆଦର୍ଶ ଓ ତାତ୍ପର୍ଯ୍ୟ ଏବେ ଚିନ୍ତାଶୀଳ ତଥା ଅନୁସନ୍ଧିତ୍ସୁ ଜନତାଙ୍କଠାରେ ଆଉ ପ୍ରଚ୍ଛନ୍ନ ହୋଇ ରହିନାହିଁ । କେହି କେହି କହିଛନ୍ତି ଯେ, ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜଦେବ ଧରଣୀଧରଙ୍କ ବୟସ ଅଳ୍ପ ଥିବା କାଳରେ ତାହାଙ୍କୁ, ତାହାଙ୍କଠାରୁ ଅଳ୍ପ ଶିକ୍ଷାଗତ ଯୋଗ୍ୟତାସମ୍ପନ୍ନ ତତ୍କାଳୀନ ଆସିଷ୍ଟାଣ୍ଟ ମ୍ୟାନେଜର ବାବୁ ଚିଟିଶାନନ୍ଦ ଦାସଙ୍କ ଅଧୀନରେ ସବ୍-ଓଭରସିଅର୍ ପଦରେ ନିଯୁକ୍ତ ଦେବାରୁ ଓ ବାବୁ ଚିଟିଶାନନ୍ଦ ଦାସ ଏହି ଦୃଷ୍ଟିରୁ ହୀନମନ୍ୟତା ଅନୁଭବ କରି ଧରଣୀଧରଙ୍କ ପ୍ରତି ନାନାବିଧ ଅପମାନସୂଚକ ବ୍ୟବହାର କରିବା ସଙ୍ଗେ ସଙ୍ଗେ ସୁଯୋଗକ୍ରମେ ତାଙ୍କର ଅନିଷ୍ଟ ବିଧାନ କରୁଥିବାରୁ ସେ ବ୍ୟତିବ୍ୟସ୍ତ ହୋଇପଡ଼ି ଏହାର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଏପରି ବିଦ୍ରୋହ ଘଟାଇଥିଲେ । ବିଶେଷକରି କେନ୍ଦୁଝର ଓ ସିଂହଭୂମି ସୀମାନ୍ତବର୍ତ୍ତୀ ଚମ୍ପୁଆ ସବଡିଭିଜନ୍ ଅନ୍ତଃପାତୀ ଲୁଙ୍ଗିଭୁଦର ଅଞ୍ଚଳର ଅଧିକାର ନେଇ ଉଭୟ ରାଜ୍ୟର ବିବାଦ ଚାଲିଥିବା ଅବସରରେ ଧରଣୀଧର ନିଜ ପାଦରେ ମାପି ସେହି ଅଞ୍ଚଳକୁ କେନ୍ଦୁଝରର ବୋଲି ସାବ୍ୟସ୍ତ କରିବା ସଙ୍ଗେ ସଙ୍ଗେ ସିଂହଭୂମିର ଇଂରେଜ ଅଧିକାରୀଙ୍କୁ ମଧ୍ୟ ସନ୍ତୁଷ୍ଟ କରାଇବାରେ ସେ ନିଷ୍ପତ୍ତି ପତ୍ରରେ ସ୍ୱାକ୍ଷର କରିଥିଲେ । କିନ୍ତୁ ବାବୁ ଚିଟିଶାନନ୍ଦ ଏଥିରେ ଈର୍ଷାନ୍ୱିତ ହୋଇ ଧରଣୀଧରଙ୍କ ବିବରଣୀକୁ ଚିରିଦେଇ ସ୍ୱୟଂ ଏହି ସୀମା ବିବାଦ ନିଷ୍ପତ୍ତି କରାଇଥିବାର ଦର୍ଶାଇ ଅନ୍ୟ ଏକ ବିବରଣୀ ପ୍ରସ୍ତୁତ କରି ରାଜାଙ୍କ ନିକଟକୁ ପଠାଇଥିଲେ ଓ ଧରଣୀଧର ଉପର୍ଯ୍ୟୁକ୍ତ କର୍ତ୍ତବ୍ୟ ସମାପନ ଉତ୍ତାରୁ ଏକ ଆକସ୍ମିକ ସମ୍ବାଦ ପାଇ ନିଜ ଭଉଣୀ ଘରକୁ ଯାଇଥିବାବେଳେ ସେ କର୍ତ୍ତବ୍ୟରେ ଅବହେଳା କରିଥିବା ଓ ବିଦ୍ରୋହ ଆୟୋଜନ କରୁଥିବା ଅଭିଯୋଗ ମଧ୍ୟ ମହାରାଜାଙ୍କ ଆଗରେ କରିଥିଲେ । ମହାରାଜ ଧନୁର୍ଜୟ ମଧ୍ୟ ବାବୁ ଚିଟିଶାନନ୍ଦଙ୍କଠାରେ ଅତ୍ୟଧିକ ବିଶ୍ୱାସ ସ୍ଥାପନ କରି ସଦା ତାହାଙ୍କର ପରାମର୍ଶରେ ଚାଳିତ ହେଉଥିବାରୁ ସହସା ଧରଣୀଧରଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିଥିଲେ । ଏହି ସମ୍ବାଦରେ ଉତ୍କଣ୍ଠିତ ହୋଇ ଧରଣୀଧର ମୁଖ୍ୟତଃ ବିଦ୍ରୋହ ଘଟାଇଥିବାର କାହାଣୀ ଶୁଣିବାକୁ ମିଳେ । ପୁଣି କେହି କେହି, ଧରଣୀଧର ନିଜକୁ ମହାରାଣୀଙ୍କ ପୁତ୍ର ବୋଲାଇ ସ୍ୱୟଂ ରାଜା ହେବା ଉଦ୍ଦେଶ୍ୟରେ ଏହିପରି ବିଦ୍ରୋହ ଘଟାଇଥିବାର ପ୍ରକାଶ କରିଥାନ୍ତି । ଫକୀର ମୋହନଙ୍କ ଆତ୍ମ ଚରିତରେ ଧରଣୀଧରଙ୍କ ଚରିତ୍ର ଓ ବିଦ୍ରୋହର ଗତି ଓ ପ୍ରକୃତିର ଯେଉଁ ଚିତ୍ର ପ୍ରଦତ୍ତ ହୋଇଅଛି, ତହିଁରୁ ଧରଣୀଧରଙ୍କର ଏହି ଅଭିଳାଷ ହିଁ ବିଦ୍ରୋହର ମୁଖ୍ୟ କାରଣ ରୂପରେ ପ୍ରତିଭାତ ହେଉଅଛି । ଏହିପରି ବ୍ୟକ୍ତିଗତ କାରଣରୁ ବିଦ୍ରୋହ ଘଟାଇଥିବା ଧରଣୀଧର ଜନ ମୁଖରେ 'ମେଳିଆ' ଓ ତାଙ୍କ ବିଦ୍ରୋହଟି 'ଭୂୟାଁ ମେଳି' ,ନାମ ଧାରଣ କରି ଆସିଅଛି । କିନ୍ତୁ ବିଚାର କରିବାକୁ ହେବ ଯେ ନିଜର କୌଣସି ବ୍ୟକ୍ତିଗତ ସ୍ୱାର୍ଥ ସାଧନ ଓ ପ୍ରତିଶୋଧାତ୍ମକ ସନ୍ତୋଷବିଧାନ ପାଇଁ ମୁଖ୍ୟତଃ ଧରଣୀଧର ବିଦ୍ରୋହ ଘଟାଇଥିଲେ ହଜାର ହଜାର ଭୂୟାଁ ସ୍ତ୍ରୀ ପୁରୁଷ ନିଜର ଜୀବନକୁ ବିପନ୍ନ କରି ଧରଣୀଧରଙ୍କ ପଛରେ ଛାୟା ଭଳି ଛିଡ଼ା ହୋଇନଥାନ୍ତେ ଓ ଏହି ବିଦ୍ରୋହାଗ୍ନିରେ ଲମ୍ଫ ଦେଇନଥାନ୍ତେ । କେବଳ ଭୂୟାଁ ନୁହେଁ, ଜୁଆଙ୍ଗ, ବାଥୁଡ଼ି, ଗଣ୍ଡ ପ୍ରଭୃତି ଆଦିବାସୀ ସମ୍ପ୍ରଦାୟର ଲୋକେ ମଧ୍ୟ ବିଦ୍ରୋହକୁ ସମର୍ଥନ କରି ତାହାର ସଫଳତା ପାଇଁ ଯଥାସାଧ୍ୟ ସାହାଯ୍ୟ କରିନଥାନ୍ତେ ।

ଅବଶ୍ୟ ପ୍ରାୟ ସମସ୍ତ ବ୍ରିଟିଶ୍ ଶାସକୀୟ ବିବରଣୀରେ କେନ୍ଦୁଝରର ତତ୍କାଳୀନ ମହାରାଜା ଧନୁର୍ଜୟଙ୍କ କୁଶାସନ ଓ ବାବୁ ଚିଟିଶାନନ୍ଦଙ୍କ ଅତ୍ୟାଚାରରେ ଜନତା ନାନା ଭାବରେ ଉତ୍ପୀଡ଼ିତ ହେଉଥିବାର ଓ ପ୍ରଜାମାନଙ୍କର ଜନ ଅସନ୍ତୋଷ ଧରଣୀ ବିଦ୍ରୋହର ଅନ୍ୟତମ କାରଣ ମାତ୍ର ହୋଇଥିବାର ଉଲ୍ଲେଖ ଥିବା ଦେଖାଯାଏ । କିନ୍ତୁ ସେ ସବୁଥିରେ ଧରଣୀଧର ନିଜର ସ୍ୱାର୍ଥ ସାଧନ ଉଦ୍ଦେଶ୍ୟରେ ଏହି ଜନ ଅସନ୍ତୋଷକୁ ଅସ୍ତ୍ର ରୂପରେ ବ୍ୟବହାର କରିଥିବାର ହିଁ ବର୍ଣ୍ଣିତ ହୋଇଅଛି । ଫକୀର ମୋହନ ମଧ୍ୟ ବେଠି ବେଗାରୀ ପ୍ରଥା ରୂପକ ଏକ ଅନ୍ୟାୟ ବ୍ୟବସ୍ଥା ଓ ତଜ୍ଜନିତ ଅତ୍ୟାଚାର ଯୋଗେ ଭୂୟାଁମାନେ କ୍ଲେଶ ପାଉଥିବାର ସ୍ୱୀକାର କରିଥିଲେ ହେଁ ବିଦ୍ରୋହର ଆୟୋଜନରେ ଧରଣୀଧରଙ୍କର ଭୂମିକା ସମ୍ପର୍କରେ ଲେଖିଛନ୍ତି – 'ନିତାନ୍ତ କଷ୍ଟ ପାଇ ବିରକ୍ତ ହୋଇ ସମସ୍ତ ଭୂୟାଁ ଏକଯୋଟରେ ବିଦ୍ରୋହୀ ହୋଇଗଲେ । ଇଚ୍ଛା, ଆସିଷ୍ଟାଣ୍ଟ ମେନେଜର ବାବୁ ଚିଟିଶାନନ୍ଦ ଦାସଙ୍କୁ ହାଣି ପକାଇ ରାଜାଙ୍କୁ ବାହାର କରିଦେବେ । × × × ଏହି ସମୟରେ ଧରଣୀଧର ଭୂୟାଁ କଟକରୁ ଆସି ଆପଣାକୁ

ମହାରାଣୀ ପୁତ୍ର ବୋଲି ପରିଚୟ ଦେବାରୁ ତାଙ୍କୁ ମହାରାଜା ପଦରେ ନିଯୁକ୍ତ କରାଯାଇଥିଲା । ଭୂୟାଁମାନଙ୍କର ବିଶ୍ୱାସ ରାଜାଙ୍କୁ ବାହାର କରି ଦେବାର ଏବଂ ନୂତନ ରାଜା ନିଯୁକ୍ତ କରିବାର ସେମାନଙ୍କର ଅଧିକାର ଅଛି ।' ବିଦ୍ରୋହ ଦମନ ଉତ୍ତାରୁ କେନ୍ଦୁଝର ରାଜ୍ୟକୁ **Government Agent** ପଦରେ ନିଯୁକ୍ତି ପାଇ ଆସିଥିବା ରାୟବାହାଦୁର ନନ୍ଦକିଶୋର ଦାସ ଯେଉଁ ବିବୃତି ଦେଇଥିଲେ ତହିଁରେ ଉଲ୍ଲେଖ ରହିଛି—''*At this juncture, the Raja's Overseer Dharanidhar Naik, who had been dismissed* **and on** *that* **account bore a** *grudge* **against** *the Raja,* *took advantage of the* **situation,** **Dharani** *himself is a* **Bhuyan and he went over to** *his class people* **and incited them to join in** *his proceedings against* **the Raja, holding** *out to them the hope that,* **by so doing this** *would for all future time* **enjoy immunity** *from all taxes and* **Bethi.** ଖ୍ରୀ: ୧୮୯୮ର ବନ୍ଦୋବସ୍ତ ବିବରଣୀରେ ବାବୁ ଅନନ୍ତଚନ୍ଦ୍ର ଦାସ ପ୍ରକାଶ କରିଛନ୍ତି ଯେ × × × **They did not inwardly live the enhancement and when the Maharaja's then Manager, the notorious Bichitrananda, exacted from them various** modes of forced labour from **which they** believed they had been exonerated by the terms of Capt. Johnstone's settlement, they grew discounted. **One Dharanidhar Naik** and certain other **Bhuyan** self seekers appeared on the scene and so fanned the flames of discounted that it assumed the shape of an open rebellion in 1891.'' ଅତଏବ୍ ମହାରାଜାଙ୍କ ତତ୍‌କାଳୀନ ମେନେଜର ବାବୁ ଫକୀର ମୋହନ, ଧରଣୀଧର ସ୍ୱୟଂ ମହାରାଜା ହେବାର ମନ୍ଦ ଅଭିପ୍ରାୟରେ ବିଦ୍ରୋହ ଘଟାଇଥିବାର, ରାୟବାହାଦୁର ନନ୍ଦକିଶୋର ଦାସ, ସେ କେବଳ ପ୍ରତିହିଂସା ପ୍ରରାୟଣ ହୋଇ ତାହା କରିଥିବାର ଓ ବାବୁ ଅନନ୍ତଚନ୍ଦ୍ର ଦାସ ସେ ସ୍ୱାର୍ଥାନ୍ୱେଷୀ ଥିବାର ପ୍ରକାଶ କରିଥିଲେ ହେଁ ସେହି କାଳରେ ଭୂୟାଁ ଜନସାଧାରଣ ଯେ ବିପୁଳ ଅସନ୍ତୋଷ ମଧ୍ୟରେ କାଳାତିପାତ କରୁଥିଲେ ଓ ତାହା ଯୋଗେ ଧରଣୀଧରଙ୍କ ଦ୍ୱାରା ତଥାକଥିତ ଭାବରେ କଳ୍ପିତ ବିଦ୍ରୋହରେ ଯୋଗ ଦେଇଥିଲେ, ଏହା ଉଲ୍ଲେଖ କରିବାକୁ ବିସ୍ମୃତ ହୋଇ ନାହାନ୍ତି ।

ବିଦ୍ରୋହର କାରଣ ଉଲ୍ଲେଖ କରି ମହାରାଜା ଧନୁର୍ଜୟ ନାରାୟଣ, ସ୍ୱୟଂ ଖ୍ରୀ: ୧୮୯୧ ମସିହା ଜୁଲାଇ ୩୧ରେ ବ୍ରିଟିଶ୍ ପ୍ରଶାସକଙ୍କୁ ଯେଉଁ ବିବରଣୀ ପ୍ରଦାନ କରିଥିଲେ, ତାହା ଏହିପରି ଅଟେ— 'ଭୂୟାଁମାନେ ଧରଣୀଧର ନାୟକର ଭ୍ରାନ୍ତ ବିବୃତି ଦ୍ୱାରା ପରିଚାଳିତ ହୋଇ ବିପଥଗାମୀ ହୋଇଥିଲେ । ପୂର୍ବରୁ କେନ୍ଦୁଝର ସିଂହାସନ ଦାବୀ କରିଥିବା ମୟୂରଭଞ୍ଜ ରାଜକୁମାର ବ୍ରୃନ୍ଦାବନ ... ବିଦ୍ରୋହକୁ ଉତ୍ତେଜିତ କରିଥିଲେ । ପରିସ୍ଥିତିକୁ ସମ୍ଭାଳିବା ନିମନ୍ତେ ଉଚ୍ଚ କର୍ତ୍ତୃପକ୍ଷ ତାହାଙ୍କୁ (ମହାରାଜାଙ୍କୁ) ଯଥାର୍ଥ ଭାବରେ ସାହାଯ୍ୟ କରିନଥିଲେ । ବିଦ୍ରୋହର ଆଶୁ କାରଣ ସମ୍ପର୍କରେ ମହାରାଜ ସ୍ୱୟଂ ଏକ ବିବୃତିରେ ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟକୁ ଜଣାଇଥିଲେ ଯେ ଧରଣୀଧର ଭାଇ ଗୋପାଳ ଜଣେ ପୁଲିସ୍‌କୁ ମାଡ଼ ମାରି କରିଥିଲା । ସେହି ପୁଲିସ୍ ଭୂୟାଁ ପିଲାଙ୍କ ନିମନ୍ତେ ଏକ ବିଦ୍ୟାଳୟ ଗୃହ ମରାମତିର ଦାୟିତ୍ୱରେ ଥିଲା । ତଦନ୍ତରୁ ଜଣାପଡ଼ିଲା ଯେ ଗୋପାଳ ଉକ୍ତ ପୋଲିସ୍‌କୁ ମାରପିଟ କରିବା ନିତାନ୍ତ ଅଯଥା । ତେଣୁ ଗୋପାଳକୁ କିଛି ଟଙ୍କା ଜୋରିମାନା କରାଯାଇଥିଲା । ଧରଣୀଧର ସେହି ସମୟରେ ସିଂହଭୂମି ସୀମାନ୍ତରେ ... କାର୍ଯ୍ୟରେ ନିଯୁକ୍ତ ଥିଲା । ଗୋପାଳକୁ ଅର୍ଥଦଣ୍ଡ ହେବା କଥା ଶୁଣି ସେ ନିଜ କାର୍ଯ୍ୟରେ ଅବହେଳା କଲା । ତେଣୁ ତାର ଉପରିସ୍ଥ ଅଧିକାରୀ ରାଜାଙ୍କୁ ଜଣାଇଲେ । ଧରଣୀଧରକୁ ରାଜପଦରୁ ବହିଷ୍କାର କରାଗଲା । ତେଣୁ ସେ, ସେ ଯାହା ସମ୍ଭବତଃ ଗୋପନରେ କରି ଆସୁଥିଲା, ତାହା ପ୍ରକାଶ୍ୟରେ କରିବାକୁ ଆରମ୍ଭ କଲା । ଅର୍ଥାତ୍, ସେ ... ସହିତ ବିଦ୍ରୋହ ଉସୁକାଇବା ଆରମ୍ଭ କରିଦେଲା । ରାଜା ... ଡକାଇ ତାହାର ଆଚରଣ ପାଇଁ ତିରସ୍କାର କଲେ । କିନ୍ତୁ ... କିଛି ସୁଫଳ ମିଳିଲା ନାହିଁ । ଛ'ମାସ ମଧ୍ୟରେ ଦେଖାଗଲା ଯେ ଭୂୟାଁମାନେ ବିଭିନ୍ନ ସ୍ଥାନରେ ସମବେତ ହୋଇ ସେମାନଙ୍କ ତଥାକଥିତ ଅଭିଯୋଗଗୁଡ଼ିକ ସମ୍ପର୍କରେ ଆଲୋଚନା କରୁଥିଲେ । ରାଜା ଏହି ସବୁ ପରିସ୍ଥିତିର ଅନୁସନ୍ଧାନ କଲେ ଓ ... କେତେକ ନେତାଙ୍କୁ ଗିରଫ୍ କରି କାରାଗୃହରେ ରଖିଲେ । ... ଧରଣୀଧର ଓ ତାହାର ଭିଣୋଇକୁ ଗିରଫ୍ କରିବା ପାଇଁ ... ଓ୍ୱାରେଣ୍ଟ ପଠାଇଲେ । କିନ୍ତୁ ସେମାନେ ସିଂହଭୂମିରୁ ଓ ... ମୟୂରଭଞ୍ଜକୁ ପଳାଇଲେ । ମହାରାଜା ଧନୁର୍ଜୟ କୌଣସି ସ୍ଥଳରେ ଧରଣୀଧର ନିଜକୁ କେନ୍ଦୁଝର ରାଜପଦ ପ୍ରତି ଲୋଲୁପ ଦୃଷ୍ଟି ପକାଇ ଥିବାର ଉଲ୍ଲେଖ କରିନାହାନ୍ତି, ଅଥଚ ଫକୀର ମୋହନ ଏପରି ଅବାନ୍ତର କଥା କେଉଁଠାରୁ ପାଇଁ ପ୍ରସ୍ତୁତ କଲେ ତାହା ଜଣାପଡୁ ନାହିଁ । ଗଭର୍ଣ୍ଣମେଣ୍ଟ ଏଜେଣ୍ଟ ବାବୁ ନନ୍ଦକିଶୋର ଦାସ ମଧ୍ୟ ନିଜ ବିବୃତିରେ ଧରଣୀଧର କୌଣସି ସ୍ଥଳେ ରାଜ ପଦବୀ ପ୍ରତି ଆଶାୟୀ ହୋଇଥିବାର ଉଲ୍ଲେଖ କରିନାହାନ୍ତି ।

ଧରଣୀଧର ନିଜେ ରାଜା ହେବାର ବାସନା ପୋଷଣ କରି ବିଦ୍ରୋହ କରିଥିଲା ବୋଲି ଫକୀର ମୋହନ ନିଜର ଆତ୍ମ ଜୀବନ ଚରିତରେ ବହୁବାର ଉଲ୍ଲେଖ କରିଛନ୍ତି । ତାଙ୍କ ଭାଷାରେ ... ଧରଣୀଧର ବିଦ୍ରୋହ ଘଟାଇବାର କାରଣ ... "ଧରଣୀଧର ଗୋଟିଏ ଭୂୟାଁ ପିଲା । ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜ ତାହାକୁ କଟକ ପଠାଇ ସର୍ଭେ ପଢ଼ାଇଥିଲେ ... ମହାରାଜାଙ୍କ ଖର୍ଚ୍ଚରେ କଟକରେ କେନ୍ଦୁଝର ବସାରେ ରହି ... ସ୍କୁଲରେ ପଢୁଥିଲେ । ସ୍କୁଲରୁ ପାସ୍ କରି ଆସି କେନ୍ଦୁଝର ରାଜଦରବାରରେ କେତେକ ମାସ ସର୍ଭେୟାର କାର୍ଯ୍ୟ କରି ଉତ୍ତାରେ ପ୍ରଶ୍ନର କରିଦେଲା — ମହାରାଜା ପ୍ରକୃତରେ ... ଅତ୍ୟାଚାରୀ, ସେ (ଧରଣୀ) କଟକରୁ ମହାରାଜାଙ୍କ ... ହୋଇ ଆସିଛି । ରାଜ୍ୟରେ ନ୍ୟାୟ ବିଚାର କରିବି । ...

ପ୍ରଜାଗଣ ନାନା କାରଣରୁ ମହାରାଜାଙ୍କ ପ୍ରତି ଅସନ୍ତୁଷ୍ଟ ଥିଲେ । ଧରଣୀ ଏହି କଥା ପ୍ରକାଶ କରିବା ମାତ୍ରେ ସମସ୍ତେ ତାହାର କଥାଟା ସ୍ୱୀକାର କରି ରାଜଶକ୍ତିକୁ ଅମାନ୍ୟ କରିବାକୁ ଲାଗିଲେ ।" ଆଉ ଏକ ସ୍ଥାନରେ ସେ ଲେଖିଛନ୍ତି– "ଭୂୟାଁମାନେ ନିତାନ୍ତ ଆରଣ୍ୟ ଲୋକ । ନିଜ ଦେଶ ବଣ ପର୍ବତ ଛାଡ଼ି ଅନ୍ୟ ଦେଶକୁ ଯିବା ଇଚ୍ଛା କରନ୍ତି ନାହିଁ । ନିତାନ୍ତ ମୂର୍ଖ, ସୁତରାଂ ଅନ୍ୟ ଦେଶର ଅସ୍ତିତ୍ୱ ସମ୍ବନ୍ଧରେ ଜ୍ଞାନ ସେମାନଙ୍କର ଏକାବେଳେକେ ନଥିଲା । ଭୂୟାଁମାନେ ଜାଣିଥିଲେ, ଜଣେ ମହାରାଣୀ ଅଛନ୍ତି । ସେ ପୃଥିବୀର ସମସ୍ତ ରାଜାଙ୍କ ଉପରେ ଅଧୀଶ୍ୱରୀ, ତାହାଙ୍କ ରାଜଧାନୀ କଟକରେ । ଧରଣୀଧର କଟକ ଯାଇଥିଲେ, କେନ୍ଦୁଝର ମହାରାଜା ଅନ୍ୟାୟ ବିଚାର କରିବାରୁ ମହାରାଣୀ ଧରଣୀଧର ଭୂୟାଁକୁ ପୋଷ୍ୟପୁତ୍ର ଗ୍ରହଣ କରି ତାଙ୍କୁ କେନ୍ଦୁଝରର ମହାରାଜା ପଦରେ ନିଯୁକ୍ତ କରିଅଛନ୍ତି । ଏଥକୁ ସେହି ମହାରାଣୀ ପୁତ୍ର ଧରଣୀଧର ଭୂୟାଁଙ୍କ ଆଜ୍ଞା ଅମାନ୍ୟ କରିବା କାହାରି ଶକ୍ତି ନଥିଲା ।" କେବଳ ସେତିକି ନୁହେଁ ଧରଣୀଧର ମହାରାଜା ପଦବୀ ଧାରଣ କରି ଦରବାର କରି ବସିବା, ମହାରାଜାଙ୍କ ଭଳି ଅଧସ୍ତନ କର୍ମଚାରୀମାନଙ୍କଠାରୁ ପାଦବନ୍ଦନ ରୂପକ ସମ୍ମାନ ଦାବୀ କରିବା, ପରବର୍ତ୍ତୀ କାଳରେ ଫକୀର ମୋହନ ମ୍ୟାନେଜର ପଦ ସୂଚିଥିବା ଛଳେ ମହାରାଜ ପଦବୀର ଗୌରବ ଦେଖାଇ ତାଙ୍କୁ ମନ୍ତ୍ରୀ ପଦରେ ନିଯୁକ୍ତ କରିବା, ରାଜ୍ୟ ଚଳାଇବା ପାଇଁ ଅର୍ଥ ସଂଗ୍ରହ ଉଦ୍ଦେଶ୍ୟରେ ରାଜାଙ୍କ ଭଣ୍ଡାରର ଲୁଟି କରିବାର ମସୁଧା କରିବା, ମହାରାଣୀ, ରାଜକନ୍ୟା ପ୍ରଭୃତିଙ୍କ ପାଇଁ ସ୍ୱତନ୍ତ୍ର ଗୃହ ନିର୍ମାଣର ଯୋଜନା କରିବା ପ୍ରଭୃତି ବିଶଦ୍ଭାବେ ଉଲ୍ଲେଖ କରି ଧରଣୀଧର କାର୍ଯ୍ୟତଃ ଯେ ମହାରାଜା ଭଳି ଆଚରଣ କରୁଥିଲା ଓ ସ୍ୱୟଂ କେନ୍ଦୁଝର ମହାରାଜା ହେବା ପାଇଁ ରାଜଧାନୀ ଦଖଲ କରିବାର ବାସନା ରଖିଥିଲା, ଏହା ସେ ପ୍ରତିପାଦନ କରିଯାଇଛନ୍ତି । 'ଉତ୍କଳ ଦୀପିକା'ରେ ମଧ୍ୟ ଧରଣୀଧର ପ୍ରତି ସହାନୁଭୂତି ଜ୍ଞାପନ କରାଯାଇ – 'ତେବେ ସେ ଆପଣାକୁ ଟୀକାଏତ ବୋଲାଇ ଯୁଦ୍ଧର ଆୟୋଜନରେ ମାତି ନ୍ୟାୟପଥ ଭୁଲିଗଲା, ଏହା ସାମାନ୍ୟ ଶିକ୍ଷିତ ଓ ସଭ୍ୟ ସମାଜରୁ ଅନ୍ତରରେ ଥିବା ଲୋକ ପ୍ରତି ବିଚିତ୍ର ନୁହଇ । ତାହାର ମାନସ ଶୁଦ୍ଧ ଥିଲା । କେବଳ କାର୍ଯ୍ୟରେ ଟିକିଏ ଭୁଲିଗଲା' ବୋଲି ଉଲ୍ଲେଖ କରାଯାଇ ଧରଣୀଧର ରାଜପୁତ୍ର ରୂପେ ଆଚରଣ କରିବାରେ ମଧ୍ୟ ତାହା ମାନସର ଶୁଦ୍ଧତା ପ୍ରକାଶ କରାଯାଇଛି । ଧରଣୀ ପରିଶେଷରେ ଯେଉଁଭଳି ଆତ୍ମ ସମର୍ପଣ କଲା, ତହିଁରୁ ସେ ମହାରାଣୀ ପୁତ୍ର ବୋଲାଇ ମହାରାଜା ପରି ଆଚରଣ କରିବା ରାଜଗାଦୀ ଦଖଲ କରିବା ଉଦ୍ଦେଶ୍ୟରେ ନୁହେଁ, କେବଳ ରାଜଭକ୍ତ ଭୂୟାଁମାନଙ୍କୁ ନିଜର ଆୟତ୍ତକୁ ଆଣିବା ଓ ସେମାନଙ୍କୁ ରାଜଦତ୍ତ ପ୍ରଲୋଭନରୁ ବିମୁଖ କରାଇବା ଉଦ୍ଦେଶ୍ୟରେ ହିଁ କରିଥିବାର ପ୍ରତୀତ ହେଉଅଛି । ଉତ୍କଳ ଦୀପିକାରେ ସ୍ପଷ୍ଟ ଉଲ୍ଲେଖ କରାଯାଇଛି ଯେ ଧରଣୀଧର 'ସରକାରୀ ପୋଲିସ୍ ପହଞ୍ଚିବାରୁ ସ୍ୱେଚ୍ଛାପୂର୍ବକ ଉପସ୍ଥିତ ହୋଇ ଆତ୍ମ ସମର୍ପଣ କରିଅଛି ଏବଂ ସ୍ପଷ୍ଟ କହିଅଛି ଯେ ସାଧାରଣତଃ ମଙ୍ଗଳ ନିମନ୍ତେ ଏପରି କରିଅଛି । ଏପରି ଦଣ୍ଡ ପାଇଲା ଉତ୍ତାରୁ ମଧ୍ୟ ସେ କହିଅଛି – ମୋହର ସାତ ବର୍ଷ କାରାବାସ ହେଲା, ସେଥିରେ ଦୁଃଖିତ ନାହିଁ । ପ୍ରଜାମାନେ ଅତ୍ୟାଚାରରୁ ରକ୍ଷା ପାଇଲେ, ଏଥିପାଇଁ ମୁଁ ବଡ଼ ଆନନ୍ଦିତ ଅଛି । ଏହିପରି ଲୋକ ଯେ ସାଧାରଣ ଉପକାରୀ ଏବଂ ହିତୈଷୀ ଏଥିରେ ସନ୍ଦେହ ନାହିଁ । (ଉ.ଦୀ ୨୬ ଭାଗ ତା ୧୮–୬–୧୮୯୧ ରିଖ ସଂଖ୍ୟା ୨୯) ।

ତେବେ ଫକୀର ମୋହନଙ୍କ ଉକ୍ତି ଅନୁଯାୟୀ, ଧରଣୀଧର କେବଳ ନିଜକୁ ମହାରାଣୀ ପୁତ୍ର ବୋଲି ପ୍ରଚାର କରିବାରୁ ଯେ ଭୂୟାଁ ସମ୍ପ୍ରଦାୟର ସମସ୍ତ ଅଧିବାସୀ ଅନ୍ଧ ଭାବରେ ତାହାକୁ ବିଶ୍ୱାସ କରି ବିଦ୍ରୋହରେ ମାତିଗଲେ । ବୃଦ୍ଧ ଓ ଅଭିଜ୍ଞ ଜନମାନେ ମଧ୍ୟ ନିଜର ବିବେକ ଓ ବିଚାର ଶକ୍ତି ପ୍ରୟୋଗ କରି ତାହାକୁ ନିବୃତ୍ତ କଲେ ନାହିଁ ଓ ତାହାର ପ୍ରତିବାଦ କଲେ ନାହିଁ, ଏହା ସହଜରେ ଗ୍ରହଣ କରି ହୁଏ ନାହିଁ । ଭୂୟାଁମାନେ ଯେ କେନ୍ଦୁଝରର ପ୍ରାଚୀନତମ ଅଧିବାସୀ, ଏହାର ବହୁ ପ୍ରମାଣ ଇତିହାସରେ ରହିଛି । ବହୁ ପୂର୍ବ କାଳରୁ ସେମାନେ ବିଭିନ୍ନ ରାଜ୍ୟକୁ ଯାଇ ବାଣିଜ୍ୟ ବ୍ୟବସାୟ କରୁଥିବାର ପ୍ରମାଦ ମଧ୍ୟ ବୌଦ୍ଧ ଜାତକରୁ ଉପଲବ୍ଧ ହୋଇଅଛି । ସେ ଛଳେ ଫକୀର ମୋହନ କିପରି ସେମାନଙ୍କୁ ଅନ୍ୟ ଦେଶର ଜ୍ଞାନ ବିରହିତ ବୋଲି ପ୍ରକାଶ କଲେ । ରାଜଶକ୍ତି ସମ୍ପର୍କରେ ଭୂୟାଁ ପ୍ରଜାମାନଙ୍କର ବିଚାର ଧାରା ବ୍ୟାଖ୍ୟାନ କରି ଫକୀର ମୋହନ ଲେଖିଛନ୍ତି– "ଭୂୟାଁମାନଙ୍କର ଏ ପର୍ଯ୍ୟନ୍ତ ଅନ୍ଧ ବିଶ୍ୱାସ ଥିଲା, ପ୍ରକୃତ କେନ୍ଦୁଝର ରାଜ୍ୟଟା ସେମାନଙ୍କର । ଇଚ୍ଛା କଲେ ପୁରୁଣା ରାଜାଙ୍କୁ ବାହାର କରିଦେଇ ନୂଆ ରାଜା ନିଯୁକ୍ତ କରିବାର ଅଧିକାର ସେମାନଙ୍କର ଅଛି । ଏହି ଭ୍ରାନ୍ତ, ନିତାନ୍ତ ମୂର୍ଖ ଧାରଣା ହେତୁରୁ ଏଥିପୂର୍ବେ ମଧ୍ୟ କେତେଥର ମେଳି କରିଥିଲେ ।" ଭୂୟାଁମାନଙ୍କ ମଧ୍ୟରେ ଏ ପ୍ରକାର ଧାରଣା ଅଛି ସତ୍ୟ, କିନ୍ତୁ ଏହା ଭ୍ରାନ୍ତ ଓ ମୂର୍ଖ ନୁହେଁ, ଏହା ବହୁଧା ପ୍ରତିପାଦିତ ହୋଇଅଛି । କେନ୍ଦୁଝର ରାଜଗାଦୀ ଯେ ଭୂୟାଁମାନଙ୍କର ସୃଷ୍ଟି, ଏହା ଅଧୁନା ଐତିହାସିକମାନଙ୍କ ମଧ୍ୟରେ ସ୍ୱୀକୃତିପ୍ରାପ୍ତ ହୋଇଅଛି । ଖ୍ରୀ: ୧୮୦୩ରେ ରଚିତ 'ଭଞ୍ଜ ବଂଶ ମାଳିକା' ପୁସ୍ତକରେ ଉଲ୍ଲେଖ ରହିଛି ଯେ, "ଏ ରାଜାଙ୍କ ସାନ ଭାଇ ଜ୍ୟୋତି ଭଞ୍ଜ ଭ୍ରମରବର ବାବୁଙ୍କୁ କେପାଟ ଶ୍ରୀ ମହାଦେବଙ୍କ ଆଜ୍ଞା ପାଇ ପାଇକୁଁ ଦେଶମାନ (ଅର୍ଥାତ୍ ପାର୍ବତ୍ୟ ଜାତି ଭୂୟାଁଗଣ) ଘେରାଇ ନେଇ ପର୍ବତରେ ଲୁଚାଇ ରଖି ତିନି ବରଷ ମେଳି ଉତାରୁ ଜ୍ୟୋତିପୁରରେ ରାଜା କରାଇଲେ ।" (ଦ୍ର:–ଭଞ୍ଜ ବଂଶ ମାଳିକା, ସଂ: ପରମାନନ୍ଦ ଆଚାର୍ଯ୍ୟ ୧୯୨୭, ପୃ: ୭) । ମହାରାଜ ଗଦାଧର ନାରାୟଣ ଭଞ୍ଜ ଦେବଙ୍କ (ଖ୍ରୀ: ୧୮୩୮–୧୮୬୧) ରଚିତ ଅଷ୍ଟାଦଶ ଲହରୀ ବା ବିଶ୍ୱ ଲହରୀ ପୁସ୍ତକରେ (ଅପ୍ରକାଶିତ) ଉଲ୍ଲେଖ ରହିଛି– "ତହୁଁ ଜ୍ୟୋତି ଭଞ୍ଜ ଆଣିଣ ବିରାଜ ଦେଶ ଭୂଇଁଆ କରିଲେ ରାଜା ହେ ସୁଜନେ" (ଅଷ୍ଟମ ଲହରୀ–୩୧ତମ ପଦ) । ଏ ସ୍ଥଳେ ସ୍ମରଣ ରଖିବାକୁ ହେବ ଯେ ରାଜା ଜ୍ୟୋତି ଭଞ୍ଜ କେନ୍ଦୁଝର ରାଜ୍ୟର ପ୍ରଥମ ନୃପତି ରୂପରେ ବହୁ କାଳରୁ ସ୍ୱୀକୃତି ପ୍ରାପ୍ତ ହୋଇଅଛନ୍ତି । ଖ୍ରୀ: ୧୮୭୨ରେ ହଣ୍ଟର ସାହେବ ନିଜ ପୁସ୍ତକରେ ଲେଖିଛନ୍ତି–"Keonjhar originally formed part of Morbhanj. But about two hundred years ago, the tribes of this part finding it a great hardship to have to travel through perilous forests to Morbhanj, to obtain justice from their prince, separated themselves and set up

**the brother of the Morbhanj Raja as their independent chief." (Hunter's Orissa-Vol. II p. 86).** ମୟୂରଭଞ୍ଜ ରାଜାଙ୍କ ଭାଇଙ୍କୁ ନେଇ ଆସି ଭୂୟାଁମାନେ କେନ୍ଦୁଝର ରାଜଗାଦୀ ସୃଷ୍ଟି କରିଥିବା ବିବରଣୀଟିକୁ ମ୍ୟାକ୍‌ମିଲାନ୍ ସାହେବ ମଧ୍ୟ ଏକ ପ୍ରବନ୍ଧରେ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି (ଦ୍ରः **Calcutta Review, Number CCV, July, 1896 by Mr. D. A. Macmillan, Supdt. Keonjhar State)** ଓ ତାହାକୁ କବଡେନ୍ ରାମସେ ସାହେବ ଫ୍ୟୁଡେଟରି ଷ୍ଟେଟ୍ ଗେଜେଟିୟର୍‌ରେ ଅତି ସମ୍ଭ୍ରମର ସହିତ ଅବିକଳ ଉଦ୍ଧାର କରିଛନ୍ତି (ଦ୍ରः **Feudatary States of Orissa, by Mr. LEB Cobden Ramsay pp. 44—46).** ମ୍ୟାକ୍‌ମିଲାନ୍ ସାହେବ ଉପର୍ଯ୍ୟୁକ୍ତ ତଥ୍ୟଟିକୁ ସବିସ୍ତର ପରିବେଷଣ କରିବା ସଙ୍ଗେ ସଙ୍ଗେ ପ୍ରତିବାର ନୂତନ ରାଜାଙ୍କ ଅଭିଷେକ ସମୟରେ ଭୂୟାଁ ପୀଢ଼ିର ସର୍ଦ୍ଦାରଗଣ ଓ ଜନସାଧାରଣ ତହିଁରେ ଅଂଶ ଗ୍ରହଣ କରି ଯେଉଁ ସବୁ ବିଶେଷ କର୍ମକାଣ୍ଡର ବିଧାନ କରନ୍ତି, ତାହା ମଧ୍ୟ ବିସ୍ତାର ସହକାରେ ବର୍ଣ୍ଣନା କରିଛନ୍ତି । ଏହା ମଧ୍ୟ ପାଠକଗଣ ପୂର୍ବୋକ୍ତ ଗେଜେଟିୟର୍ ପୁସ୍ତକରେ ଦେଖିବାକୁ ପାଇପାରିବେ । ଏହା ଉଦ୍ଧାର କଲେ ପ୍ରବନ୍ଧର ବୃଥା କଳେବର ବୃଦ୍ଧି ଘଟିବ । ରାଜା ଧନୁର୍ଜୟଙ୍କ ଅଭିଷେକ କାଳରେ ଯେଉଁ ସମସ୍ତ କୃତ୍ୟ କରାଯାଇଥିଲା, ତାହା ଉତ୍କଳ ଦୀପିକାରେ ଏହି ରୂପେ ବର୍ଣ୍ଣିତ ହୋଇଅଛି— "ଅରଣ୍ୟବାସୀ ପ୍ରଜାମାନେ ଏକ ଅପୂର୍ବ ବିଧାନରେ ରାଜାଙ୍କର ଅଭିଷେକ କରନ୍ତି । ରାଜା ଧନୁର୍ଜୟ ଭଞ୍ଜ ଦେବଙ୍କୁ ବିଧିମତ ରାଜା କରିବା ନିମିତ୍ତ ଚଳିତ ମାସ ତାରିଖ ନିର୍ଦ୍ଧାର ହେବାରୁ ସେହି ଦିନ ବନଜାତି ପ୍ରଜାମାନେ କ୍ଷୌର ଓ ସସଜ୍ଜ ହୋଇ ବାଦ୍ୟ ଘେନି ଗଡ଼ଠାରେ ମେଳି ହେଲେ ଓ ରାଜା ସେମାନଙ୍କର ପ୍ରତ୍ୟେକ ଜଣକୁ ଏକ ଖଣ୍ଡ ଲେଖାଏଁ ଶିରୋପା ଦେଇ ସେମାନଙ୍କର ଲଲାଟ ଦେଶରେ ଏବଂ କର୍ଣ୍ଣରେ ଚନ୍ଦନ ପୁଷ୍ପାଦି ପିନ୍ଧାଇ ଦେଲେ । ତନ୍ମଧ୍ୟରୁ ଏମାନଙ୍କ ମଧ୍ୟରେ ଏକ ଜଣ ଲଇଁପଡ଼ି ଘୋଡ଼ା ହେଲା ଏବଂ ରାଜା ତାହା ଉପରେ ବସିଲାରୁ ସେ ଘୋଡ଼ା ପ୍ରାନ୍ତ ଲମ୍ଫ ଦେଇ ଉଆସ ମଧ୍ୟରୁ ପୂଜା ସ୍ଥାନକୁ ଆସିଲା ଏବଂ ସେଠାରେ ରାଜା ତାହା ପୃଷ୍ଠରୁ ଓହ୍ଲାଇଲେ ଏବଂ ବିଧି ଅନୁସାରେ ପୂଜା ଶେଷ ହେଲାରୁ ଲୋକମାନଙ୍କ (ଭୂୟାଁମାନଙ୍କ) ମଧ୍ୟରେ ଦ୍ରବ୍ୟ ଦେଲେ" । (ଦ୍ରः—ଉଦୀ—ତୃତୀୟ ଭାଗ ତା ୨୨–୨–୧୮୬୮–ସଂଖ୍ୟା ୮) । ଶ୍ରୀ ୧୯୨୭ରେ ପ୍ରକାଶିତ କେଶବଚନ୍ଦ୍ର ମିଶ୍ରଙ୍କ ପ୍ରଣୀତ 'ଭୂୟାଁ ଜାତି' ପୁସ୍ତକରେ ମଧ୍ୟ ଭୂୟାଁମାନଙ୍କ କର୍ତ୍ତୃକ ଏହି ବିଶିଷ୍ଟ ଅଭିଷେକ ବିଧିଟିକୁ ବିଶଦ ଭାବରେ ବର୍ଣ୍ଣନା କରାଯାଇଛି । ଏପରିକି ସ୍ୱୟଂ ଫକୀରମୋହନ ମଧ୍ୟ ନିଜର ଆତ୍ମଜୀବନ ଚରିତରେ ଏହି ବିଶେଷ ଉତ୍ସବାନୁଷ୍ଠାନକୁ ବର୍ଣ୍ଣନା କରିବାକୁ ବିସ୍ମୃତ ହୋଇନାହାନ୍ତି । ଏପରି ସ୍ଥଳେ ସେ ଭୂୟାଁମାନଙ୍କର ବିଶ୍ୱାସକୁ ଅନ୍ଧ ବିଶ୍ୱାସ, ଭ୍ରାନ୍ତ ଓ ମୂର୍ଖ ଇତ୍ୟାଦି ବିଶେଷଣ ଦେଇ ସ୍ୱପକ୍ଷ ଖଣ୍ଡନ ଦୋଷ ହିଁ କରିଛନ୍ତି । ପ୍ରକୃତରେ ଭୂୟାଁମାନେ ନିଜ ରାଜାଙ୍କୁ କେଉଁ ଦୃଷ୍ଟିରେ ଦେଖନ୍ତି, ତାହା ମ୍ୟାକମିଲାନ ସାହେବଙ୍କ ନିମ୍ନ ବିବରଣୀରୁ ସ୍ପଷ୍ଟ ପ୍ରତୀତ ହୁଏ—"**The Bhuyans desire in their chief a** *leader to whom they can appeal and obtain advice and have no desire for indipendence, they claim however, a prescriptive right to approve of or resent the administrative acts of the chief, whom they have themselves created, the peridical rebellions which have taken place have been due to dislive of the individual ruler by the Bhuyan clans. This attitude was manifest in the rebellion of 1890—1893 (Feudatory states of Orissa–p. 46)".* ଅତଏବ ଭୂୟାଁ ନାୟକ ଧରଣୀଧର ସ୍ୱୟଂ ରାଜା ହେବାର ଉଦ୍ଦେଶ୍ୟରେ ବିଦ୍ରୋହ ଘଟାଇବେ ଓ ଭୂୟାଁମାନେ ଏଥିରେ ସମ୍ମତ ହୋଇ ବିଦ୍ରୋହରେ ଯୋଗଦାନ କରିଥିବେ, ଏହା ନିତାନ୍ତ ଅସତ୍ୟ । ସେମାନେ କେବଳ ଚାହିଁଥିଲେ ଅନ୍ୟାୟ ଓ ଅତ୍ୟାଚାରର ପ୍ରତୀକାର ହେଉ ଏବଂ ସେମାନଙ୍କୁ ଏକ ପ୍ରଜାବତ୍ସଳ ଓ ଶାନ୍ତିପୂର୍ଣ୍ଣ ପ୍ରଶାସନ ମିଳୁ—ଅନ୍ୟ କିଛି ନୁହେଁ । ସେମାନଙ୍କର ବିଦ୍ରୋହ ମଧ୍ୟ କେବଳ ସେତିକି ପାଇବା ପାଇଁ ଅଭିପ୍ରେତ ଥିଲା । ଧରଣୀଧର କେବଳ ସେହି ଅଭିପ୍ରାୟରେ ବିଦ୍ରୋହର ନେତୃତ୍ୱ ନେଇ ଜାତୀୟ ବୀର ରୂପରେ ପ୍ରସିଦ୍ଧ ହେଲେ ।

ସେହି କାଳରେ ଭୂୟାଁ ପ୍ରଜାମାନଙ୍କ ପ୍ରତି ଯେ ପ୍ରଚୁର ଅନ୍ୟାୟ ଓ ଅତ୍ୟାଚାର ହେଉଥିଲା ଓ ତହିଁରେ ଜର୍ଜରିତ ହୋଇ ସେମାନେ ଯେ ପ୍ରବଳ ଅସନ୍ତୋଷ ମଧ୍ୟରେ କାଳଯାପନ କରୁଥିଲେ, ଏହା ଅନେକ ସରକାରୀ ବିବରଣୀରେ ଆଲୋଚିତ ହୋଇଥିବାର ପ୍ରମାଣ ଦର୍ଶାଯାଇଅଛି । ଏପରିକି ସ୍ୱୟଂ ଫକୀରମୋହନ ମଧ୍ୟ ଭୂୟାଁରେ ଅନ୍ୟାୟ ବ୍ୟବସ୍ଥା ଓ ତଜ୍ଜନିତ ଅତ୍ୟାଚାର [illegible] ପାଉଥିବାର ସ୍ୱୀକାର କରି ଯାଇଛନ୍ତି । ୧୩୦୫ ସାଲ [illegible] ୧୮୯୮ର ବନ୍ଦୋବସ୍ତ ବିବରଣୀରେ ବାବୁ ଅଭୟଚନ୍ଦ୍ର ଦାସ [illegible] କରିଛନ୍ତି ଯେ, *"Latterly, however, he (Maharaja Dhanurjoy) placed implicit confidence on his unworthy Manager, Bichitrananda Das, whose high-handedness and oppression brought the Maharaja into discredit with the subjects of the State. They became discontented and as the Maharaja did not check the Manager in his misdoings, the discontent grew were and were till it burst out in the shape of an open rebellion in 1891* **(Seftlemout Report-1305 Amli 2nd reprint p.11).** ଅତଏବ୍ ମହାରାଜାଙ୍କର କୁଶାସନ ଓ ଅଦୂରଦର୍ଶିତା ହିଁ [illegible] ମେନେଜର ବିଚିତ୍ରାନନ୍ଦଙ୍କୁ ଦମନ କରିବାର ଅସାମର୍ଥ୍ୟ ହିଁ [illegible] ବିଦ୍ରୋହର ମୁଖ୍ୟ କାରଣ ବୋଲି ବାବୁ ଅଭୟ ଚନ୍ଦ୍ର ଦାସ [illegible] ପୋଷଣ କରିଛନ୍ତି । ବିଚିତ୍ରାନନ୍ଦ କଟକ [illegible] ଜଣେ ଅମଲା ଥିଲେ । ମାଡ଼, ଛାମୁ ଲୋକମାନଙ୍କ [illegible]

ରେଖାଙ୍କ ହେଲା ଉତ୍ତାରୁ ମହାରାଜାଙ୍କ ନିକଟରେ ନିଯୁକ୍ତ ହୋଇଥିଲେ। ତାହାଙ୍କ ବିରୁଦ୍ଧରେ ପୁନଃ ପୁନଃ ଗୁହାରୀ ଯାଇବାରୁ ଗଡ଼ଜାତ ସୁପରିଣ୍ଟେଣ୍ଡେଣ୍ଟ ତାହାଙ୍କୁ ବାହାର କରିଦେବା ପାଇଁ ମହାରାଜାଙ୍କୁ ଅନୁରୋଧ କରିଥିଲେ ସୁଦ୍ଧା କିଛି ଫଳ ନହେବାର ଓ ମହାରାଜା ଜାଣିଶୁଣି ଆପଣା ଶ୍ରେୟ ନିମିତ୍ତ ତାହାଙ୍କୁ ରଖିଥିବାରୁ ଉତ୍କଳ ଦୀପିକା ତା ୧୮-୭-୧୮୯୧ ରିଖରେ ଉଲ୍ଲେଖ ରହିଛି। ବାବୁ ନନ୍ଦକିଶୋର ଦାସ ମଧ୍ୟ ନିଜର ବିବରଣୀରେ ବିଚିତ୍ରାନନ୍ଦ ଜଣେ ଧୂର୍ତ୍ତ ଓ ଅତ୍ୟାଚାରୀ ମେନେଜର ଥିବାର ଉଲ୍ଲେଖ କରିଛନ୍ତି। ଅଥଚ ଫକୀର ମୋହନ ବିଚିତ୍ରାନନ୍ଦଙ୍କୁ ଅତ୍ୟନ୍ତ ପରିଶ୍ରମୀ ଓ କର୍ମଠ ବୋଲି ପ୍ରଶଂସା କରିଛନ୍ତି। ବିଚିତ୍ରାନନ୍ଦଙ୍କ ବିରୁଦ୍ଧରେ ଭୂୟାଁମାନଙ୍କର ଆକ୍ରୋଶ ଥିବାର ସେ, "ଭୂୟାଁ, ଆସିଷ୍ଟାଣ୍ଟ ମେନେଜର ବାବୁ ବିଚିତ୍ରାନନ୍ଦ ଦାସଙ୍କୁ ହାଣି ପକାଇ ରାଜାଙ୍କୁ ବାହାର କରିଦେବେ। ବିଚିତ୍ରାନନ୍ଦ ବାବୁ ହାତରେ ପଡ଼ିଥିଲେ ନିଶ୍ଚୟ ହାଣ ଖାଇଥାନ୍ତେ। ପଳାଇ ଯାଇ ରକ୍ଷା ପାଇଲେ।" ଇତ୍ୟାଦି ଶବ୍ଦରେ ସ୍ୱୀକାର କରିଥିଲେ ମଧ୍ୟ ତାଙ୍କ ବିରୁଦ୍ଧରେ ପଦେ ମଧ୍ୟ କହିନାହାନ୍ତି। ମହାରାଜାଙ୍କୁ ପ୍ରଶଂସା କରି ସେ, "ରାଜା ଅତ୍ୟାଚାରୀ — ଏ ସମ୍ବନ୍ଧରେ ମୁଁ ଦୃଢ଼ ରୂପେ କହିପାରେ, ମହାରାଜାଙ୍କ ଅତ୍ୟାଚାର ସମ୍ବନ୍ଧରେ କି କେନ୍ଦୁଝର ପ୍ରଜା କି ନିଃସମ୍ପର୍କୀୟ ବାହାରର ଲୋକ କେହିହେଲେ ଗୋଟିଏ ପ୍ରମାଣ ଦେବାକୁ ସମର୍ଥ ହେବେ ନାହିଁ" — ଏହିପରି ଉଲ୍ଲେଖ କରିଥିଲେ ମଧ୍ୟ ଉତ୍କଳ ସାହିତ୍ୟରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ, "ଏ ବିଦ୍ରୋହର ପ୍ରଧାନ କାରଣ ଏହି ଯେ କେନ୍ଦୁଝରର ଭୂତପୂର୍ବ ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜ ଦେବ ବଡ଼ ପ୍ରଜା ପୀଡ଼କ ଥିଲେ, ତାଙ୍କର ଅତ୍ୟାଚାରରେ ପ୍ରଜାମାନେ, ବିଶେଷତଃ ଭୂୟାଁମାନେ ଅତ୍ୟନ୍ତ ଉତ୍ତେଜିତ ହୋଇ ମେଳି ବାନ୍ଧିଥିଲେ" (ଉସା–୨୨ଶ ଭାଗ, ୫ମ ସଂଖ୍ୟା) ବୋଲି ଜଣାଇଛନ୍ତି। ଉତ୍କଳ ଦୀପିକାରେ ସ୍ପଷ୍ଟ ଉଲ୍ଲେଖ ଅଛି– "ମହାରାଜାଙ୍କର ଅତ୍ୟାଚାର ଏହି ଗଣ୍ଡଗୋଳର ମୂଳ କାରଣ ଅଟଇ। ସେ ଉତ୍ତମ ରୂପେ ଶାସନ କାର୍ଯ୍ୟ ନିର୍ବାହ କରି ପ୍ରଜାଙ୍କୁ ସୁଖ ସ୍ୱାଚ୍ଛନ୍ଦ୍ୟରେ ରଖିଥିଲେ ଏପରି ଘଟି ନଥାନ୍ତା × × × ମହାରାଜା ପ୍ରଜାମାନଙ୍କ ପ୍ରତି ଅତ୍ୟାଚାର କଲେ ଏବଂ ତହିଁ ପାଇଁ ସେମାନେ ମାତି ଉଠିବାରୁ ସେମାନଙ୍କୁ ସମ୍ଭାଳି ନନେଇ ଅଧିକ ଉତ୍ତେଜିତ କଲେ ଏବଂ ଶେଷରେ ଉପାୟହୀନ ହୋଇ ପଳାଇ ଯାଇ ସରକାରଙ୍କ ଆଶ୍ରୟ ଲୋଡ଼ିଲେ। ଏହିପରି ଲୋକ ଅବଶ୍ୟ ଶାସନ ଭାର ବହିବାର ଅଯୋଗ୍ୟ ଓ ତାହାଙ୍କୁ ତହିଁରୁ ରହିତ କରିବା ଅନ୍ୟାୟ ନୁହଁଇ। କେହି କେହି କହନ୍ତି କି ଆସିଷ୍ଟାଣ୍ଟ ମ୍ୟାନେଜର ବିଚିତ୍ରାନନ୍ଦ ଦାସ ସବୁ ଅନିଷ୍ଟର ମୂଳ ଏବଂ ପ୍ରଜାମାନଙ୍କର ତାହା ଉପରେ ବିଶେଷ ଘୃଣା ଓ ରାଗ। ତାହାଙ୍କୁ ବାହାର କରିଦେଲେ ଅନିଷ୍ଟର ମୂଳ ଉତ୍ପାଟିତ ହେବ। ମହାରାଜାଙ୍କ ପ୍ରତି ଏପରି କଠିନ ହେବାର ଆବଶ୍ୟକ କିସ। ମାତ୍ର ଆମ୍ଭମାନଙ୍କ ବିବେଚନାରେ ଏ ଯୁକ୍ତି ଯଥେଷ୍ଟ ନୁହଇ। × × × ମହାରାଜା ଜାଣିଶୁଣି ଆପଣା ଶ୍ରେୟ ନିମିତ୍ତ ତାହାଙ୍କୁ ରଖିଥିଲେ। ଅଥବା ସେପରି ହୋଇନଥିଲେ ଯେଉଁ ବ୍ୟକ୍ତି କିଏ ଭଲ କିଏ ମନ୍ଦ ଚିହ୍ନି ନପାରେ ଏବଂ ଚେତାଇ ଦେଲେ ସୁଦ୍ଧା ଚେତଇ ନାହିଁ। ସେ ଯେ ଗୁରୁତର ଅଯୋଗ୍ୟ, ଏ କଥା କିଏ ନବୋଲିବ। ମହାରାଜା ନିର୍ବୋଧ ନୁହନ୍ତି। କେବଳ ପ୍ରଜାଙ୍କ ହିତ ଅପେକ୍ଷା ଆପଣାର ହିତ ଅଧିକ ଲୋଡ଼ିବାରୁ ଏ ଦଶା ପ୍ରବର୍ତ୍ତିଲା। ଯଥାର୍ଥ ବୁଦ୍ଧିମାନ ଓ ଚତୁର ହୋଇଥିଲେ ସେ ଜାଣିପାରିଥାନ୍ତେ ଯେ ପ୍ରଜାଙ୍କର ମଙ୍ଗଳରେ ତାଙ୍କର ମଙ୍ଗଳ ଏବଂ ତଦନୁସାରେ କାର୍ଯ୍ୟ କରୁଥାନ୍ତେ।"

ବିଦ୍ରୋହର ପରିଣତି ଓ ପ୍ରଭାବକୁ ସୂକ୍ଷ୍ମ ଭାବରେ ଅନୁଧ୍ୟାନ କଲେ ଏହାର କାରଣ, ଅର୍ଥାତ୍ ମହାରାଜାଙ୍କର କୁଶାସନ ଓ ପ୍ରଜାମାନଙ୍କର ଜନ ଅସନ୍ତୋଷର ପ୍ରକୃତ ଚିତ୍ର ପ୍ରସ୍ଫୁଟିତ ହୋଇଉଠେ। ବାବୁ ଯଜ୍ଞେଶ୍ୱର ଦାସ ଉଲ୍ଲେଖ କରିଛନ୍ତି ଯେ ବିଦ୍ରୋହ ଦମନ ଉତ୍ତାରୁ ମହାରାଜାଙ୍କର କୁଶାସନର ସ୍ୱରୂପ ସମ୍ପର୍କରେ ଏକ ବିଶଦ ଅନୁସନ୍ଧାନ କରାଯାଇ ମହାରାଜାଙ୍କୁ ଗାଦିଚ୍ୟୁତ କରାଯାଇଥିଲା ଓ ପ୍ରଜାମାନଙ୍କୁ ଅତ୍ୟାଚାରରୁ ରକ୍ଷା କରିବା ପାଇଁ ବିଭିନ୍ନ ପଦକ୍ଷେପ ନିଆଯାଇଥିଲା। ରାଜା ଓ ରାଜକର୍ମଚାରୀମାନେ ଯେତେ ଭାବରେ ନିଜ ନିଜ କ୍ଷମତାର ଦୁରୁପଯୋଗ କରୁଥିଲେ ଓ ଯେଉଁଥି ପାଇଁ ଏହି ବିଦ୍ରୋହର ସୂତ୍ରପାତ ହୋଇଥିଲା। ତନ୍ମଧ୍ୟରୁ ଅଧିକାଂଶ ଭୂମିର ସ୍ୱତ୍ୱାସତ୍ୱ ଓ ଭୂ–ରାଜସ୍ୱ ନିର୍ଦ୍ଧାରଣ ସମ୍ପର୍କୀୟ ଚରମ ଅବ୍ୟବସ୍ଥାଜନିତ ହୋଇଥିବା କାରଣରୁ ଗଭର୍ଣ୍ଣମେଣ୍ଟ ଏଜେଣ୍ଟ ରାୟବାହାଦୁର ନନ୍ଦକିଶୋର ଦାସ ଏହି ଅଞ୍ଚଳରେ ବ୍ୟାପକ ସର୍ଭେ ଓ ବନ୍ଦୋବସ୍ତ କରିବା ପାଇଁ ସରକାରୀ ଆଦେଶ ପାଇଥିଲେ। ଏହି ଆଦେଶ ବଙ୍ଗ ସରକାରଙ୍କ ପତ୍ର ସଂଖ୍ୟା ୭୯୩, ତା ୧–୩–୧୮୯୨ ରିଖରେ ତାହାଙ୍କୁ ପ୍ରଦତ୍ତ ହୋଇଥିଲା। ବିଭିନ୍ନ କାରଣବଶତଃ ଏହି କାର୍ଯ୍ୟ ସେହି ବର୍ଷ ଶେଷ ଆଡ଼କୁ ହିଁ ଆରମ୍ଭ କରାଯାଇ ଆଠ ବର୍ଷ ଧରି ଚାଲିଥିଲା। ଅରଣ୍ୟ ଓ ପର୍ବତସଙ୍କୁଳ ଭୂୟାଁ ପୀଢ଼ ଓ ଜୁଆଙ୍ଗ ପୀଢ଼ ଅଞ୍ଚଳରେ ପ୍ରଚଳିତ ରୀତିରେ ସର୍ଭେ ଓ ବନ୍ଦୋବସ୍ତ କାର୍ଯ୍ୟକ୍ରମ କରିବା ଅସମ୍ଭବ ମନେ କରି ସେହି ଅଞ୍ଚଳ ପାଇଁ ଏକ ପୃଥକ୍ ପ୍ରକାରର ଅନୁସନ୍ଧାନ କରାଯାଇ, ପ୍ରଜାମାନେ କେତେ କର ଦେବେ ଓ କେଉଁ ସବୁ ସେବା କରିବେ ତାହା ଲିପିବଦ୍ଧ କରିବା ପାଇଁ ମଧ୍ୟ ନିର୍ଦ୍ଦେଶ ଆସିଥିଲା। ଏଥି ପୂର୍ବରୁ ମହାରାଜା ଧନୁର୍ଜୟ ନାରାୟଣ ଖ୍ରୀ: ୧୮୭୦ ରେ ବିଭିନ୍ନ ଦଣ୍ଡପାଟର ସାନି ବନ୍ଦୋବସ୍ତ କରିବା ଆରମ୍ଭ କରିଥିଲେ ଓ ତାହା ଖ୍ରୀ: ୧୮୮୮ ପର୍ଯ୍ୟନ୍ତ ଚାଲିଥିଲା। ମହାରାଜାଙ୍କ ବନ୍ଦୋବସ୍ତ ଅନୁଯାୟୀ ଭୂ–ରାଜସ୍ୱ ଅତିଶୟ ଭାବରେ ବୃଦ୍ଧି କରାଯାଇ ଥିବାରୁ ଜନସାଧାରଣ ଅସନ୍ତୁଷ୍ଟ ହୋଇଥିଲେ। ତେଣୁ ପ୍ରଥମେ ଏହି ବନ୍ଦୋବସ୍ତ ପ୍ରତି ଲୋକମାନେ ଅସହଯୋଗ ମନୋବୃତ୍ତି ପ୍ରଦର୍ଶନ କରିଥିଲେ। ଭୂୟାଁ ପୀଢ଼ ଓ ଜୁଆଙ୍ଗ ପୀଢ଼ର ପ୍ରଜାଗଣ ମଧ୍ୟ ଏ ପ୍ରକାର ଜନ ଅସନ୍ତୋଷ ଓ ଅସହଯୋଗ ମନୋବୃତ୍ତିର ଭାଗୀଦାର ଥିଲେ। ଖ୍ରୀ: ୧୮୯୩ରେ ହିଁ ସେମାନଙ୍କୁ ପ୍ରବୋଧା ଯାଇପାରିଥିଲା।

ବାବୁ ଯଜ୍ଞେଶ୍ୱରଙ୍କ ନିଜ ଭାଷାରେ– "*There was no fixed revenue payable by the Hill Bhuyans before the disturbances of 1868. They only paid certain tribute in kind and rendered some personal service. As natural in such cases, there would be no limit to the demands and any amount of service might be exacted. This was realy excessively*

**harassing and Colonel (then Captain) Johnstone, who was stationed in the Killah after those disturbances commuted the services and other dues for a fixed plough tax of 8 annas and in the case of those who had no ploughs, a house tax of four annas, besides a school cess of one anna per every house. This settlement took effect from 1870 and was for ten years. After the expiry of Capt. Johnstones' settlement, the present Chief raised the rates and had two settlements made in 1881 and 1890 respectively. Naturally way-ward and suspicious of innovations, they did not inwardly like the enhancement and when the Maharaja's then Manager, the notorious Bichitrananda, exacted from them various modes of forced labour from which they believed they had been exonerated by the terms of Capt. Johnstone's settlement, they grew discontented. x x x it assumed the shape of an open rebellion in 1891 (ibid-p. 33).''**

କେନ୍ଦୁଝର ପ୍ରଜାମାନଙ୍କର, ବିଶେଷତଃ ଭୂୟାଁ ଓ ଜୁଆଙ୍ଗ ପୀଢ଼ ଅଧିବାସୀଙ୍କର ଦୁର୍ଦ୍ଦଶା ଓ ଦୁର୍ବିପାକକୁ ଯଥାର୍ଥ ଭାବରେ ଉପସ୍ଥାପିତ କରି ଓ ତାହାକୁ ହିଁ ବିଦ୍ରୋହର ମୁଖ୍ୟ କାରଣ ରୂପରେ ପ୍ରଦର୍ଶନ କରି ବାବୁ ଅଜୟଚନ୍ଦ୍ର ନିଶ୍ଚୟ କେନ୍ଦୁଝରବାସୀଙ୍କର ଧନ୍ୟବାଦାର୍ହ ହୋଇଛନ୍ତି। ଭୂୟାଁ ଓ ଜୁଆଙ୍ଗ ପୀଢ଼ ଅଞ୍ଚଳରେ ବିଧିବଦ୍ଧ ସ୍ୱତ୍ୱାଧିକାର ଓ କର୍ମିକମା ନିର୍ଦ୍ଧାରଣ କରାଯାଇ ଲିପିବଦ୍ଧ ନହୋଇଥିବା ଆଳରେ ମେନେଜର ବାବୁ ବିଚିତ୍ରାନନ୍ଦ ନିରୀହ ବନବାସୀମାନଙ୍କୁ ଯେଉଁଳି ଯଥେଚ୍ଛାଚାର ଭାବରେ ଶୋଷଣ ଓ ଅତ୍ୟାଚାର କରି ଚାଲିଥିଲେ, ତାହା ହିଁ କ୍ରମଶଃ ବିଦ୍ରୋହର ରୂପ ନେଇଥିଲା ବୋଲି ସେ ଘୋଷଣା କରିଛନ୍ତି। ରାୟବାହାଦୁର ନନ୍ଦକିଶୋର ମଧ୍ୟ ତାଙ୍କ ବିବରଣୀରେ, ଭୂୟାଁମାନେ ସମସ୍ତ କର ଓ ବେଠି ପ୍ରଥାରୁ ଅବ୍ୟାହତି ପାଇବାର ଆଶ୍ୱାସନାରେ ବିଦ୍ରୋହରେ ଯୋଗ ଦେଇଥିବାର ପ୍ରକାଶ କରିଛନ୍ତି। ଏ ସବୁ ବିଷୟ ପୂର୍ବରୁ ସୂଚିତ ହୋଇଅଛି। ସେମାନେ ଅବଶ୍ୟ ରାଜନୈତିକ କାରଣରୁ ଧରଣୀଧରଙ୍କୁ ସ୍ୱାର୍ଥାନ୍ୱେଷୀ, ପ୍ରତିହିଂସା ପରାୟଣ ଇତ୍ୟାଦି କହି ତାଙ୍କୁ ଜାତୀୟ ନେତା ରୂପରେ ସ୍ୱୀକାର କରିନାହାନ୍ତି। କିନ୍ତୁ ପୂର୍ବୋକ୍ତ ପରିଚ୍ଛେଦମାନଙ୍କରେ ଧରଣୀଧରଙ୍କର ସ୍ୱାର୍ଥ ଭାବନାକୁ ସମ୍ପୂର୍ଣ୍ଣ ନିରାକରଣ କରାଯାଇଅଛି। ତାହାର ଭାଇ ଗୋପାଳ ସେହି ବେଠି ପ୍ରଥାର ହିଁ ଶିକାର ହୋଇ ଯେ ଦଣ୍ଡିତ ହୋଇଥିଲା, ତାହା ମଧ୍ୟ ଦର୍ଶାଯାଇଅଛି। କୁସୁମିତା ଗ୍ରାମର ବୃଦ୍ଧ ଜନମାନଙ୍କ ମୁଖରୁ ଶୁଣାଯାଏ ଯେ ରାଜଦୂତ ରୂପରେ ଆସିଥିବା [illegible] ଗୋପାଳଙ୍କ ଗୃହରେ ଭୋଜନ କରି ଉଚ୍ଛିଷ୍ଟ ପତ୍ର ଅପସାରଣ କରିବାକୁ ସ୍ୱୀକୃତ ନହୋଇ ଗଣ୍ଡଗୋଳ ଆରମ୍ଭ କରିବାରୁ ଓ ସେ ନକଲେ ପରିଣତି ଭୟାବହ ହେବାର ଧମକ ଦେବାରୁ ହିଁ ଗ୍ରାମବାସୀମାନେ ତାଙ୍କୁ ମାରଧର କରିଥିଲେ। ପୁଣି ତାଙ୍କ ଓଲଟା ଅଭିଯୋଗରେ ଗୋପାଳ ନାୟକ ଦଣ୍ଡିତ ହୋଇଥିଲା ଓ ସେହି ଆଳରେ ବିଚିତ୍ରାନନ୍ଦଙ୍କ ପ୍ରରୋଚନାରେ ଧରଣୀଧରଙ୍କୁ ମଧ୍ୟ ବରଖାସ୍ତ ହେବାକୁ ପଡ଼ିଥିଲା। ତତ୍କାଳୀନ ରାଜ କର୍ମଚାରୀମାନଙ୍କର ଅତ୍ୟାଚାର ଓ ପୀଡ଼ନ କେତେଦୂର [illegible] କରିପାରେ, ତାହା ଏଥିରୁ ହିଁ ଅନୁମେୟ। ଫକୀର ମୋହନ ଓ ସ୍ୱୟଂ ପ୍ରଜାମାନେ କ୍ଲେଶ ପାଉଥିବାର ସ୍ପଷ୍ଟ ପ୍ରକାଶ କରିଛନ୍ତି।

ବିଦ୍ରୋହ ଦମନ ହେବା ଉତ୍ତାରୁ ତତ୍କାଳୀନ ଏଜେଣ୍ଟ ଭେଲି ସାହେବ ସ୍ନ: ୧୩୦୧ ଓ ୧୩୦୨ ସାଲ (ଖ୍ରୀ: ୧୮୯୪ ଓ ୧୮୯୫)ରେ ଭୂୟାଁ ଓ ଜୁଆଙ୍ଗ ପୀଢ଼ ଅଞ୍ଚଳରେ ପୁନର୍ବାର ବନ୍ଦୋବସ୍ତ କରାଇଥିଲେ। ପୂର୍ବରୁ କୁହାଯାଇଛି ଯେ ଏହି ଅଞ୍ଚଳରେ ଭୂମି ସ୍ୱତ୍ୱାଧିକାର ନିର୍ଦ୍ଧାରଣ ଓ ଭୂ-ରାଜସ୍ୱ ବନ୍ଦୋବସ୍ତ ନହୋଇଥିବା ଘଟଣାରୁ ରାଜ କର୍ମଚାରୀମାନେ ଯଥେଚ୍ଛାଚାର ଭାବରେ ବିଭିନ୍ନ ସମୟରେ ପ୍ରଜାମାନଙ୍କଠାରୁ ବିଭିନ୍ନ ଦ୍ରବ୍ୟ ରାଜସ୍ୱ ନାମରେ ଆଦାୟ କରୁଥିଲେ ଓ ସେମାନଙ୍କୁ ନାନା ଭାବରେ ଖଟାଉଥିଲେ। ଏହି ସବୁ ସେବା ପାଇଁ ସେମାନଙ୍କୁ ପାରିଶ୍ରମିକ ଦିଆଯାଉ ନଥିଲା। ଏହି ରାଜସ୍ୱ ଓ ସେବାର କୌଣସି ସୀମା ନଥିଲା। ତେଣୁ ଜନଷ୍ଟନ ସାହେବ ୧୮୭୦ ମସିହାରେ ପ୍ରଥମ ବନ୍ଦୋବସ୍ତ କରିଥିଲେ. ତହିଁରେ ହଳ ସଂଖ୍ୟା ଓ ଗୃହ ଅନୁସାରେ ରାଜସ୍ୱ ପରିମାଣ ଅର୍ଥ ଆକାରରେ ନିରୂପିତ ହୋଇଥିଲା। ପରବର୍ତ୍ତୀ କାଳରେ ଦୁଇଥର ମହାରାଜା ସେହି ରାଜସ୍ୱ ପରିମାଣକୁ ଅଯଥା ବୃଦ୍ଧି କରି ଜନ ଅସନ୍ତୋଷର ଭିତ୍ତି ସ୍ଥାପନ କରିଥିଲେ। [illegible] ବିଚିତ୍ରାନନ୍ଦ ପୁରୁଣା ବେଠି ପ୍ରଥାକୁ ପୁନଃ ପ୍ରଚଳନ କରି [illegible] ଅତ୍ୟାଚାରର ସୌଧ ନିର୍ମାଣ କରିଦେଲେ। ଫଳରେ ବିଦ୍ରୋହ ହେଲା। ବିଦ୍ରୋହ ପରବର୍ତ୍ତୀ ଭେଲି ସାହେବଙ୍କ ବନ୍ଦୋବସ୍ତରେ ଯଦିଓ ମହାରାଜାଙ୍କର ନିରୂପିତ ରାଜସ୍ୱ ଦର ଅପରିବର୍ତ୍ତିତ ରଖାଗଲା, ତଥାପି ଭୂୟାଁମାନେ ଯେଉଁ ସବୁ ସେବା [illegible], ସେଗୁଡ଼ିକର ଗ୍ରାମ ପ୍ରଧାନମାନଙ୍କୁ ଦିଆଯାଉଥିବା ପରିମାଣ ନିର୍ଦ୍ଦିଷ୍ଟ ଭାବରେ ଉଲ୍ଲେଖ କରାଗଲା। ଏହା ଉତ୍ତାରୁ ପ୍ରତି ପାଞ୍ଚ ବର୍ଷରେ ଥରେ ଲେଖାଏଁ ଯାନି ବନ୍ଦୋବସ୍ତ କରାଯାଇ ପ୍ରତିବାର ଭୂ-ରାଜସ୍ୱ ପରିମାଣ ନିରୂପଣ କରାଯାଇ ତାହା ସରକାରୀ ରେକର୍ଡରେ ଓ ପଟ୍ଟାମାନଙ୍କରେ ଲିପିବଦ୍ଧ କରାଗଲା ଓ ଗ୍ରାମ ପ୍ରଧାନମାନଙ୍କଠାରୁ କବୁଲିୟତ ବା ସ୍ୱୀକୃତିପତ୍ର ଗ୍ରହଣ କରାଗଲା। ତତ୍ସଙ୍ଗେ [illegible] ପୀଢ଼ର ସର୍ଦ୍ଦାରମାନଙ୍କୁ ମଧ୍ୟ ଅନୁରୂପ ପଟ୍ଟା [illegible] ସେମାନଙ୍କଠାରୁ କବୁଲିୟତ ଗ୍ରହଣ କରାଗଲା। [illegible] ଭାବରେ ଭୂ-ରାଜସ୍ୱ ନିର୍ଦ୍ଧାରଣ ଓ ତାହାର ଆଦାୟ [illegible] ସୁନିୟନ୍ତ୍ରଣ କରାଗଲା। ଏହି ପ୍ରକାର ବେଠି ବ୍ୟତୀତ ଅନ୍ୟ [illegible] ବେଠି କର୍ମକୁ ନିଷିଦ୍ଧ କରାଗଲା ଓ ବେଠିଆମାନଙ୍କୁ ଖୋରାକି ଦିଆଯିବାର ବ୍ୟବସ୍ଥା ରଖାଗଲା। ୧୯୧୮-୧୯ ମସିହା

ଶେଷୋକ୍ତ ବିବରଣୀରେ ପୂର୍ବ ବନ୍ଦୋବସ୍ତକାଳୀନ ଏହି ସବୁ ବେଠି ପ୍ରଥାର ନାମ ନିମ୍ନମତେ ଉଲ୍ଲେଖ ରହିଛି :—

(୧) ରଥ ବେଠି—ଗଡ଼ର ରଥଯାତ୍ରା ପାଇଁ କାଠ ଯୋଗାଇବା ଓ ରଥ ଟାଣିବା ।

(୨) ଗଞ୍ଜ ବେଠି—ରାଜା ଓ ପ୍ରଧାନ କର୍ମଚାରୀଗଣ ଗସ୍ତରେ ଆସିଲେ ସେମାନଙ୍କର ଭାର ବୋହିବା ।

(୩) ଶାଦୀ–ଗାମୀ ବେଠି—ରାଜ ପରିବାରରେ ବିବାହ ପ୍ରଭୃତି ବିଶିଷ୍ଟ ଉତ୍ସବ ହେଲେ ସେବା କରିବା ।

(୪) ଛୁଆଣି ବେଠି—ଦଣ୍ଡପାଟମାନଙ୍କରେ ଥିବା ରାଜ୍ୟର କଚେରୀ ଘରଗୁଡ଼ିକୁ ଛୁଆଣି କରିବା । ଏ ସମସ୍ତ କ୍ଷେତ୍ରରେ ଦୈନିକ ୫ ପଇସା ଖୋରାକି ବା ଭୋଜନ ଭତ୍ତା ଦିଆଯିବାର ମଧ୍ୟ ଅବସ୍ଥା ରହିଥିଲା । (ଦ୍ର: **Final Report 1914-15, p.** ୨୬) ।

ନାୟକ ଧରଣୀଧର ଜେଲ୍‌ଦଣ୍ଡ ପାଇଲେ ସତ୍ୟ, ବିଦ୍ରୋହୀ ଭୂୟାଁଗଣ ଏହି ସବୁ ଲାଭ ମଧ୍ୟ ପାଇଥିଲେ । ବାସ୍ତବରେ ବିଦ୍ରୋହରେ ଭୂୟାଁମାନଙ୍କର ହିଁ ବିଜୟ ହୋଇଥିଲା । ଘୃଣ୍ୟ ବେଠି ପ୍ରଥାର ଉଚ୍ଛେଦ ସାଧନ ପାଇଁ ଭୂୟାଁମାନେ ବିପ୍ଳବୀ ଧରଣୀଧରଙ୍କ ନେତୃତ୍ୱରେ ବିଦ୍ରୋହ କରିଥିବାର ଫକୀର ମୋହନ ମଧ୍ୟ ସ୍ୱୀକାର କରିଛନ୍ତି । ତାଙ୍କ ନିଜ ଭାଷାରେ :—

"ବର୍ତ୍ତମାନ ବିଦ୍ରୋହର କାରଣ ମାଛକାନ୍ଦଣା ଜୋର, ନିଜଗଡ଼ର ନୈଋତ କୋଣସ୍ଥିତ ଗୋଟିଏ ଅନୁଚ୍ଚ ପର୍ବତଶ୍ରେଣୀ ମଧ୍ୟ ଭାଗରେ ମାଛକାନ୍ଦଣା ଜୋର ପ୍ରବାହିତ । ସେହି ଜୋର ଜଳ ଉତ୍ତର ଦିଗକୁ ବହିଯାଇ ବୈତରଣୀ ନଦୀରେ ପଡ଼େ । ନିଜଗଡ଼ ମୁକାମରୁ ପାର୍ବତ୍ୟ ପ୍ରଦେଶକୁ ଯିବା ସକାଶେ ଯେଉଁ ବାଟ ପଡ଼ିଅଛି, ପର୍ବତ ମୂଳରୁ ଉଠି ଅଳ୍ପ ଦୂରକୁ ଗଲେ ମାଛକାନ୍ଦଣା ଜୋର ପଡ଼େ । କେନ୍ଦୁଝର ନିଜଗଡ଼ ଗ୍ରାମଟା ପର୍ବତର ଉପତ୍ୟକା ମଧ୍ୟରେ ଅବସ୍ଥିତ । ବାଟ ପାଖ ପର୍ବତ ଶୃଙ୍ଗର ଅତି ଅଳ୍ପ ଅଂଶ ମାଟି ଭାଙ୍ଗିଦେଇ ପୂର୍ବ ଦିଗକୁ ଗୋଟିଏ ମାହାରା ଖୋଲିଦେଲେ ଜୋର ଜଳଟା ଉତ୍ତର ଦିଗକୁ ନଯାଇ ପୂର୍ବ ଦିଗସ୍ଥ ନିଜଗଡ଼ ସମସ୍ତ ବିଲରେ ମାଡ଼ିଯାନ୍ତା । ଜୋର ଖୋଲା କାର୍ଯ୍ୟ ଚାଲିଥିବା ସମୟରେ ମୁଁ ସେହି ମାଛକାନ୍ଦଣା ଦେଖିବାକୁ ଯାଇଥିଲି । ଜୋର ଦେଖି ମୋ ମନରେ ଅତ୍ୟନ୍ତ ଆନନ୍ଦ ଜାତ ହେଲା । ଅନୁମାନ କଲି ଏହି ଜୋରଟି ନିଜଗଡ଼ ପକ୍ଷରେ ନିତାନ୍ତ ଆୟକର ଏବଂ ସ୍ୱାସ୍ଥ୍ୟପ୍ରଦ ଅଟେ, ମାତ୍ର ଯେ ପ୍ରକାର କଳ୍ପନା ସ୍ଥିର କରାଯାଇ କାର୍ଯ୍ୟ ଆରମ୍ଭ କରାଯାଇଅଛି, ସେଥିରୁ ସେ ପ୍ରକାର ଲାଭର ସମ୍ଭାବନା ନଥିଲା । ଅନୁମାନ କଲି, ଜୋର ଦୁଇପାଖରେ ଉଚ୍ଚ ପର୍ବତଶିଖ, ଉତ୍ତର ପଟରେ ଜୋର ସ୍ରୋତ ଜଳ ଅଟକାଇବା ପାଇଁ ଗୋଟିଏ ବଡ଼ ବନ୍ଧ ବାନ୍ଧି ଦେଲେ ଗୋଟିଏ ହ୍ରଦ ପରି ପାଣି ଜମା ହୋଇଯିବ । ପୂର୍ବ ଦିଗକୁ ମାହାରା ଖୋଳି ଦେଇ କବାଟ ଲଗାଇ ଦେଲେ ଇଚ୍ଛାନୁସାରେ ସମୟରେ ଗ୍ରାମ ମଧ୍ୟକୁ ଜଳ ନେଇ ହେବ । ଅଧିକରେ ଯେବେ ଅନାବୃଷ୍ଟି ହେଲେ ମଧ୍ୟ ଫସଲ ନଷ୍ଟ ହେବ ନାହିଁ । କେବଳ ଏତିକି ନୁହେଁ, ପର୍ବତ ମୂଳରୁ ପୂର୍ବ ଦିଗକୁ ନିଜଗଡ଼ ଗ୍ରାମକୁ ଦୁଇ ଭାଗରେ ବିଭକ୍ତ କରି କେନାଲ ପରି ଗୋଟିଏ ନାଳ ଅଛି । ବୃଷ୍ଟି କାଳରେ ମାତ୍ର ଜଳ ଥାଏ, ଅନ୍ୟ ସମୟରେ ଶୁଷ୍କ । ସେଥିରେ ଜଳପୂର୍ଣ୍ଣ କରି ରଖିଲେ ଗଡ଼ବାସୀଙ୍କ ପକ୍ଷରେ ସ୍ନାନ, ପାନ ଏବଂ ବାଡ଼ିରେ ଫସଲ ଆବାଦ ପକ୍ଷରେ ବଡ଼ ଉପକାର ହୁଅନ୍ତା । ଗଡ଼ବାସୀ ଯେ ସର୍ବଦା ଜ୍ୱର ଭୋଗ କରୁଅଛନ୍ତି, ଭଲ ଜଳ ବ୍ୟବହାର କଲେ ସ୍ୱାସ୍ଥ୍ୟରକ୍ଷା ହୁଅନ୍ତା । ଆଉ ଜ୍ୱର ହୁଅନ୍ତା ନାହିଁ । ଏହି ଜୋର କାର୍ଯ୍ୟ ସକାଶେ ଆନୁମାନିକ ଦଶ ହଜାର ଟଙ୍କା ବ୍ୟୟ ଆବଶ୍ୟକ । ଗଡ଼ର ଆସିଷ୍ଟେଣ୍ଟ ମେନେଜର ବାବୁ ଚିଦାନନ୍ଦ ଦାସ ମୋ ସଙ୍ଗରେ ଥିଲେ । ମୋ ଅଭିପ୍ରାୟ ତାଙ୍କୁ ଜଣାଇଲି ।

ଜୋର ଦେଖି ବାହୁଡ଼ିବା ଉତ୍ତାରେ ମହାରାଜା ଚିଦାନନ୍ଦ ବାବୁଙ୍କୁ ପଚାରିଲେ, "ଜୋର ଦେଖି ମେନେଜର ବାବୁ କ'ଣ କହିଲେ" ? ଚିଦାନନ୍ଦ ବାବୁ କେବଳ ଏତିକି କଥା କହିଲେ ଯେ ମାହାରା ଖୋଳାଇଲେ ଦଶ ହଜାର ଟଙ୍କା ଖରଚ ହେବ । ମହାରାଜା ବିରକ୍ତ ହୋଇ କହିଲେ, "ମେନେଜର ବାବୁ ସବୁ ବିଷୟରେ ଟଙ୍କା ଖରଚ କରିବାକୁ ଚାହାନ୍ତି" । ମହାରାଜା ମୋତେ ସେ ସମ୍ବନ୍ଧରେ କିଛି କଥା ପଚାରିଲେ ନାହିଁ, ମୁଁ ମଧ୍ୟ କିଛି କହିଲି ନାହିଁ । ମାହାରାଜାଙ୍କ ଆଦେଶ ଅନୁସାରେ ମୁଁ କଟକରୁ ଖୁବ୍ ମୋଟ ତିନୋଟି ଉଚ୍ଚ ଇଷ୍ପାତ୍ ଲୁହା ସାବଳ ଅଣାଇ ଦେଲି । ମାଛକାନ୍ଦଣା ଜଳ ନିଜଗଡ଼ ମୌଜା ବିଲକୁ ପଠାଯିବା ସକାଶେ ପର୍ବତଶୃଙ୍ଗ ଭାଙ୍ଗି ମାହାରା ଖୋଲା ଲାଗିଲା । ସେଥିରେ ଇଞ୍ଜିନିୟର ନିଯୁକ୍ତ ହେଲେ ନିଜ ଗଡ଼ କଚେରୀର ଆସିଷ୍ଟାଣ୍ଟ ମେନେଜର ବାବୁ ଚିଦାନନ୍ଦ ଦାସ । ଭୂୟାଁ ପ୍ରଜାମାନଙ୍କୁ ବେଠିରେ ଧରାଇ ଆଣି କାମରେ ଲଗାଇ ଦିଆଗଲା ।"

"ଭୂୟାଁ ବେଠିଆମାନେ ମାହାରା ଖୋଳାରେ ଲାଗିଥାନ୍ତି । ଦଶ ପନ୍ଦର ସେର ଓଜନ ସାବଳରେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ପଥର ଭାଙ୍ଗିବାକୁ ହେବ, ସହଜ କଥା ନୁହେଁ । ବାରଟା ସମୟରେ ଖାଇବା ସକାଶେ ଦୁଇଘଣ୍ଟା ଛୁଟି । କାମରେ କିଛିତ ଢିଲା କଲେ ବେଠିଆ ବାଡ଼ିଆ ଖାଏ । ଯେଉଁ ବେଠିଆ ଘରୁ ଖୁଦକ ବାନ୍ଧି ଆଣିଅଛି, ସେ ରୋଷେଇ କରି ଖାଉ । ଯେଉଁ କଙ୍ଗାଳଟାର ଘରେ କିଛି ନଥିଲା, ଖୁଦକ ଆଣିପାରି ନାହିଁ, ସେଇଟା ଉପାସରେ ରହୁ, ବେଠିଆକୁ ପୁଣି ଖୁଦକ ଦିଆଯିବ କ'ଣ ?"

ଏହି ହେଉଛି ତତ୍କାଳୀନ ବେଠି ପ୍ରଥା ଓ ଭୂୟାଁ ପ୍ରଜାମାନଙ୍କ ପ୍ରତି ରାଜ ପ୍ରଶାସନର ଅତ୍ୟାଚାରର ନମୁନା, ମହାରାଜାଙ୍କର ନିଯୁକ୍ତିପ୍ରାପ୍ତ ଓ ରାଜଭକ୍ତ, ପୁଣି ଭୂୟାଁ ବିଦ୍ରୋହ କାଳରେ ନଅ ଦିନ ପର୍ଯ୍ୟନ୍ତ ବିଦ୍ରୋହୀମାନଙ୍କ କର୍ତ୍ତୃକ ବନ୍ଦୀ ଥିବା ଫକୀର ମୋହନଙ୍କ ଭାଷାରେ ତାହାର ସ୍ୱରୂପ ଏହିପରି । ବିଦ୍ରୋହ ଦମନ ପରେ ମହାରାଜା ଖ୍ରୀ: ୧୮୯୯ ବେଠି ପ୍ରଥାର ଯୌକ୍ତିକତା ଦର୍ଶାଇ ଧନୁର୍ଜୟ ନାରାୟଣ ବେଠି ପ୍ରଥାର ଯୌକ୍ତିକତା ଦର୍ଶାଇ ଜୁଲାଇ ମାସ ୩୧ ତାରିଖରେ ଗଡ଼ଜାତ ମହିଳା ସୁପରିନ୍ଟେଣ୍ଡେଣ୍ଟଙ୍କ ନିକଟକୁ ଯେଉଁ ଆବେଦନ ପତ୍ର ଲେଖିଥିଲେ, ତାହାର ସାରମର୍ମ ଏହି— "ଏହି ପ୍ରଥାକୁ ଜନସାଧାରଣ ଅଧିକ ପସନ୍ଦ କରନ୍ତି, କାରଣ ସେମାନଙ୍କ ଆୟତ୍ତରେ ଅର୍ଥ ଅପେକ୍ଷା ସମୟ ଅଧିକ ଥାଏ । ତାହାକୁ ସେମାନେ ଶ୍ରମ ରୂପରେ ଦେଇ ତାହାର ବିନିମୟରେ ବହୁ ସୁବିଧା ସୁଯୋଗ ଭୋଗ କରିପାରନ୍ତି । ଏହି

ତଥାକଥିତ forced labour ବା ବେଠି ବିନିମୟରେ ସେମାନେ ସମସ୍ତ ପ୍ରକାର ଶୁଳ୍କରୁ ଅବ୍ୟାହତି ପାଆନ୍ତି । କାଳେଣୀ ପାଇଁ କିମ୍ବା ଗୃହ ନିର୍ମାଣ କରିବା ପାଇଁ ସେମାନେ ଯେଉଁ ସମସ୍ତ କାଠ କାଟନ୍ତି ଏବଂ ମହୁ, ଟସର, ଉଭୟ ବନ୍ୟ ଓ କୃଷିଜାତ ଗଞ୍ଜାଇ, ଝୁଣା ପ୍ରଭୃତି ଯେଉଁ ସବୁ ଜଙ୍ଗଲ ଜାତ ଦ୍ରବ୍ୟ ସେମାନେ ସଂଗ୍ରହ କରନ୍ତି, ସେଥିପାଇଁ ସେମାନେ କୌଣସି ଜଙ୍ଗଲ କର ଦିଅନ୍ତି ନାହିଁ । ମୟୂରଭଞ୍ଜରେ ଏହି ସବୁ ଦ୍ରବ୍ୟ ଉପରେ କର ଧାର୍ଯ୍ୟ କରାଯାଇ ହିଁ ବେଠି ପ୍ରଥା ଉଚ୍ଛେଦ କରାଯାଇଅଛି । କିନ୍ତୁ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ଯେ ଏହି ସବୁ ସର୍ତ୍ତରେ ଏଠାକାର ପ୍ରଜାମାନେ ବେଠି ପ୍ରଥା ଉଚ୍ଛେଦ କରାଯିବାକୁ ରାଜି ହେବେ ନାହିଁ । ଏହା ବ୍ୟତୀତ ଯେ ବେଠିରେ କୌଣସି ପାରିଶ୍ରମିକ ଅର୍ଥ ଦିଆନଯାଇ ବଳ ପୂର୍ବକ ମାଗଣା ଶ୍ରମ ଆଦାୟ କରାଯାଏ, ତାହା ନୁହେଁ, କିନ୍ତୁ ଏହି ପ୍ରଥାରେ-କେବଳ ଶ୍ରମର ବଜାର ଦର ଅପେକ୍ଷା କିଛି କମ୍ ଦିଆଯାଏ । ଏପରିକି ମୁଗଲବନ୍ଦୀ ଅଞ୍ଚଳରେ, ଯେଉଁଠି ଲୋକମାନେ ବେଠି ପ୍ରଥା ବିରୁଦ୍ଧରେ ସହଜରେ ମାଜିଷ୍ଟ୍ରେଟ୍ କଚେରୀକୁ ଯାଇ ସେମାନଙ୍କର କ୍ଳେଶ ମୋଚନ କରାଇ ପାରିବେ, ସେଠାରେ ମଧ୍ୟ ସେମାନେ ଜମିଦାରମାନଙ୍କୁ ବେଠି ଦରରେ ସେବା କରିବାକୁ ଇଚ୍ଛା କରନ୍ତି । ୟୁରୋପୀୟ ଶାସକମାନଙ୍କ ଦୃଷ୍ଟିରେ ଏହି ବେଠି ପ୍ରଥା ଯେତେ ନିନ୍ଦନୀୟ ହେଉ ପଛକେ, ଏହା ବର୍ତ୍ତମାନ କାଳରେ ମଧ୍ୟ, କେବଳ ଦେଶୀୟ ରାଜ୍ୟଗୁଡ଼ିକରେ ନୁହେଁ, ସରକାରଙ୍କ କୋର୍ଟ ଅଫ୍ ୱାର୍ଡସ୍ ବିଭାଗର ପ୍ରତ୍ୟକ୍ଷ ଶାସନାଧୀନ ଥିବା ଢେଙ୍କାନାଳ ଓ ନରସିଂହପୁର ପରି ଗଡ଼ଜାତ ରାଜ୍ୟମାନଙ୍କରେ, ମୁଗଲବନ୍ଦୀ ଜମିଦାରୀମାନଙ୍କରେ ଓ ଓଡ଼ିଶାର ସର୍ବତ୍ର ପ୍ରଚଳିତ ଅଛି ।

ପାଠକେ ତୁଳନା କରନ୍ତୁ: ମହାରାଜା ଧନୁର୍ଜୟ ନାରାୟଣଙ୍କ ବିଭୂତି ଓ ତାଙ୍କ ମେନେଜର ଫକୀର ମୋହନଙ୍କର ପ୍ରକୃତ ଅବସ୍ଥା ବର୍ଣ୍ଣନରେ ମଧ୍ୟ କେତେଦୂର ଅମେଳ ରହିଅଛି । ବେଠିଆମାନଙ୍କୁ ପାରିଶ୍ରମିକ ଦିଆଯିବା ତ ଦୂରର କଥା, ସେମାନଙ୍କୁ ମୁଠାଏ ଚାଉଳ ମଧ୍ୟ ରାନ୍ଧି ଖାଇବାକୁ ଦିଆଯାଉ ନଥିଲା । ସେମାନେ ଭୋକ ଓପାସରେ ଦିନସାରା ଖଟୁଥିଲେ । ଅତ୍ୟୁଚ୍ଚ ପାହାଡ଼ ଶୃଙ୍ଗ ଭଙ୍ଗା ହୋଇ ନିଳଗଡ଼କୁ ମାହାରା ଖୋଲା ହେବ, ଉପକାର ପାଇବେ ନିଳଗଡ଼ର ରାଜାନୁରକ୍ତ ବ୍ରାହ୍ମଣ, କରଣ ପ୍ରଭୃତି ଅଧିବାସୀ ଓ ରାଜ କର୍ମଚାରୀବର୍ଗ, ଅଥଚ ଭୋକରେ ଖଟି କାମ କରିବେ ପାର୍ବତ୍ୟ ଭୂୟାଁମାନେ । ଏହା କୁଆଡ଼େ ଯୁକ୍ତିଯୁକ୍ତ କଥା ? ଧରଣୀଧର ଅଶିକ୍ଷିତ ଅନୁନ୍ନତ ଭୂୟାଁ ସମ୍ପ୍ରଦାୟ ମଧ୍ୟରୁ ଏକମାତ୍ର ଶିକ୍ଷିତ ହୋଇ ବାହାରିଲେ, ସେ ସ୍ୱଚକ୍ଷୁରେ ନିଜ ଜାତି ଭାଇମାନଙ୍କର କ୍ଳେଶ ଓ ଦୁର୍ଦ୍ଦଶା ଦେଖିଲେ, ପ୍ରତିବାଦ କଲେ ଏହା ହେଲା ତାଙ୍କର ଅପରାଧ । ତାଙ୍କୁ କାର୍ଯ୍ୟଚ୍ୟୁତ କରାଗଲା, ବିଦ୍ରୋହୀ ବା ରେଭିଲ ଆଖ୍ୟା ଦିଆଗଲା ଓ ତାଙ୍କ କାର୍ଯ୍ୟରେ ବ୍ୟକ୍ତିଗତ ସ୍ୱାର୍ଥର ଆରୋପ କରାଗଲା ।

ଏ ସ୍ଥଳେ ସ୍ମରଣ ରଖିବାକୁ ହେବ ଯେ ପ୍ରକୃତ ବିଦ୍ରୋହ ଆରମ୍ଭ ହେବା ପୂର୍ବରୁ ରାଜ୍ୟରେ ବିଭିନ୍ନ ସ୍ଥାନରେ ସଭା ସମିତି ହୋଇ ଅତ୍ୟାଚାର ଓ ବେଠି ପ୍ରଥା ବିରୁଦ୍ଧରେ ପ୍ରବଳ ଜନ ଆନ୍ଦୋଳନ ଆରମ୍ଭ ହୋଇ ସାରିଥିଲା । ଏହିପରି ଏକ ସଭା ପ୍ରଥମେ ହାଣ୍ଡିଭଙ୍ଗା ଗ୍ରାମଠାରେ ଓ ପରେ ରିମୁଳିଠାରେ ହୋଇଥିଲା । ରେମୁଳିଠାରେ ବସିଥିବା ବୈଠକରେ ଧରଣୀଧର ସ୍ୱୟଂ ଉପସ୍ଥିତ ହୋଇ ପରାମର୍ଶ ଦେଇଥିଲେ ଯେ ମହାରାଜାଙ୍କ ବିରୁଦ୍ଧରେ ସଙ୍ଘବଦ୍ଧ ହୋଇ କାର୍ଯ୍ୟ କଲେ ସେ ରାଜଦ୍ରୋହ ଅଭିଯୋଗ ଆଣି ପ୍ରଜାମାନଙ୍କୁ ଅଧିକ ହଇରାଣ କରିବେ । ଏଣୁ ମହାରାଜା ତଥା ଅତ୍ୟାଚାରୀ ରାଜ କର୍ମଚାରୀମାନଙ୍କର କାର୍ଯ୍ୟକଳାପ ବିରୁଦ୍ଧରେ କମିଶନର୍ ସାହେବ ତଥା ଗଡ଼ଜାତ ସୁପରିନ୍‌ଟେଣ୍ଡେଣ୍ଟଙ୍କ ନିକଟରେ ଆବେଦନ ପତ୍ର ଦାଖଲ କରିବାକୁ ହେବ । ତଦନୁଯାୟୀ ଆବେଦନ ପତ୍ର ପ୍ରସ୍ତୁତ କରାଯାଇ କମିଟିର କର୍ମକର୍ତ୍ତାଗଣ କଟକ ଓ ବାରିପଦା ଯାତ୍ରା କରିଥିଲେ । ପାଞ୍ଚ ମାସ ପର୍ଯ୍ୟନ୍ତ ଅପେକ୍ଷା କରି ତାହାର କୌଣସି ଉତ୍ତର ନପାଇବାରୁ ଓ ଗଭର୍ଣ୍ଣମେଣ୍ଟ ସ୍ତରରେ ତାହା ଉପରେ କୌଣସି କାର୍ଯ୍ୟାନୁଷ୍ଠାନ ନହେବାରୁ ଭୂୟାଁମାନେ ବ୍ୟସ୍ତ ହୋଇ ପଡ଼ିଥିଲେ ଓ ଧରଣୀଧର ମଧ୍ୟ ପ୍ରତ୍ୟକ୍ଷ ବିଦ୍ରୋହ ଭିନ୍ନ ଅନ୍ୟ ପନ୍ଥା ନାହିଁ ବୋଲି ବିଚାର କରିଥିଲେ । 'ଉତ୍କଳ ଦୀପିକା'ରେ ଧରଣୀଧର ପ୍ରତି ସହାନୁଭୂତି ଜ୍ଞାପନ କରାଯାଇ ଉଲ୍ଲେଖ ଅଛି— "ସେ ପୂର୍ବରୁ ଗଡ଼ଜାତ ସୁପରି ଓ ଗଭର୍ଣ୍ଣମେଣ୍ଟ ନିକଟକୁ ଯେମନ୍ତ ଦରଖାସ୍ତ ପଠାଇ ପାଞ୍ଚ ମାସ ପର୍ଯ୍ୟନ୍ତ ଉତ୍ତର ନପାଇ ଯେମନ୍ତ ବ୍ୟସ୍ତ ହୋଇ ପଡ଼ିଲା, ଯେଉଁ ଥରେ ସୁପ୍ରିଣ୍ଟ ସାହେବଙ୍କ ନିକଟକୁ ବୁଲି ଆସିଥାନ୍ତା ଓ ଯେଉଁ ଯେବେ ସଫଳତା ନହୋଇ ଫେରି ଯାଇଥାନ୍ତା, ତେବେ ସେ ଯେଉଁ ସବୁ କାର୍ଯ୍ୟ କଲା, ତହିଁ ପାଇଁ କେହି ତାକୁ ଦୋଷୀ କରନ୍ତେ ନାହିଁ ।" ଏହି ଦୃଷ୍ଟିରୁ ଧରଣୀଧରଙ୍କ କଳ୍ପିତ ବିଦ୍ରୋହରେ ସ୍ୱାର୍ଥ ଭାବନା ନଥିଲା, କେବଳ ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟଙ୍କୁ ବିଦ୍ରୋହ ଦମନ କରିବା ଲାଗି ଯଥେଷ୍ଟ ସୈନ୍ୟ ସାହାଯ୍ୟ ପ୍ରଦାନ କରିବା ପାଇଁ ପ୍ରଭାବିତ କରିବା ଉଦ୍ଦେଶ୍ୟରେ ତତ୍କାଳୀନ ରାଜ ଦରବାର ଅଳୀକ କଳ୍ପନା ମାତ୍ର ଥିଲା । ଯଥାର୍ଥରେ ଧରଣୀଧର ଥିଲେ ଅଗଣିତ ଜନସମାଜର ନେତା, ସେମାନଙ୍କର ଦୁଃଖ ଦୁର୍ଦ୍ଦଶାର କାହାଣୀର ପ୍ରତୀକ, ସେ ଥିଲେ ଜାତୀୟ ବୀର ।

ଆନନ୍ଦ କୁଟୀର, କେନ୍ଦୁଝର ।

# ସମ୍ବଲପୁରରେ ଭାରତ ଛାଡ଼ ଆନ୍ଦୋଳନ

* ଭାଗବତ ପ୍ରସାଦ ନନ୍ଦ *

ସମ୍ବଲପୁର ଅଞ୍ଚଳରେ ସଂଗ୍ରାମର ପରମ୍ପରା ରହିଛି । ଏହି ଅଞ୍ଚଳର ଲୋକେ ବହୁତ ସରଳ ବିଶ୍ୱାସୀ, କିନ୍ତୁ ଯେତେବେଳେ ସେମାନଙ୍କର ଆତ୍ମସମ୍ମାନରେ ଆଞ୍ଚ ଆସେ, ସେମାନେ ସମସ୍ତ ଦୋଷ ସ୍ୱୀକାର କରି ସଂଗ୍ରାମ କରିବାକୁ ପଛଘୁଞ୍ଚା ଦିଅନ୍ତି ନାହିଁ । ଏଠିକାର ରାଣୀ ଚନ୍ଦ୍ର କୁମାରୀ ମରହଟ୍ଟାମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିଥିଲେ । ବୀର ସୁରେନ୍ଦ୍ର ସାଏ ସିପାହୀ ବିଦ୍ରୋହର ବହୁ ପୂର୍ବରୁ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ କରିଥିଲେ । ଗାନ୍ଧିଜୀଙ୍କ ଆହ୍ୱାନରେ ସମ୍ବଲପୁର ଜିଲ୍ଲା ସ୍କୁଲର ଛାତ୍ରମାନେ ଦେଶରେ ସର୍ବ ପ୍ରଥମେ ସ୍କୁଲ ବର୍ଜନ କରିଥିଲେ । ଲବଣ ସତ୍ୟାଗ୍ରହରେ ସମ୍ବଲପୁରରୁ ସତ୍ୟାଗ୍ରହୀମାନେ ଇଞ୍ଚୁଡି ଯାଇ ଗିରଫ୍ ହୋଇଥିଲେ । ସେହିପରି ଭାରତ ଛାଡ଼ ଆନ୍ଦୋଳନରେ ସମ୍ବଲପୁର ଅଞ୍ଚଳ ଏକ ଗୌରବମୟ ଭୂମିକା ଗ୍ରହଣ କରିଥିଲା ।

ଦ୍ୱିତୀୟ ବିଶ୍ୱ ଯୁଦ୍ଧ ୧୯୩୯ ମସିହା ସେପ୍ଟେମ୍ବର ୯ ତାରିଖ ଦିନ ଆରମ୍ଭ ହେଲା । ଗୋଟିଏ ପକ୍ଷରେ ଆମେରିକା, ଇଂଲଣ୍ଡ ଓ ସୋଭିଏତ୍ ୟୁନିୟନ୍, ଅନ୍ୟ ପକ୍ଷରେ ଇଟାଲୀ, ଜର୍ମାନୀ ଓ ଜାପାନ । ଏହି ସନ୍ଧିକାଳରେ ୧୯୩୯–୪୦ ମସିହାରେ ରାମଗଡଠାରେ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଅଧିବେଶନରେ କେତେଜଣ ପ୍ରତିନିଧି ପ୍ରଥମ ବିଶ୍ୱ ଯୁଦ୍ଧରେ ଇଂରେଜ ସରକାରଙ୍କ ପ୍ରତି ଗାନ୍ଧିଜୀଙ୍କ ମନୋଭାବକୁ ନେଇ ସମାଲୋଚନା କରିଥିଲେ । ଦ୍ୱିତୀୟ ବିଶ୍ୱ ଯୁଦ୍ଧ ସମୟରେ ଇଂରେଜ ସରକାର ପ୍ରାଦେଶିକ ସରକାର କିମ୍ବା ଜାତୀୟ କଂଗ୍ରେସ ସହ ପରାମର୍ଶ ନକରି ଭାରତବର୍ଷକୁ ପକ୍ଷଭୁକ୍ତ କରି ଯୁଦ୍ଧ ନିଆଁକୁ ଠେଲିଦେଇ ଥିବାରୁ ଗାନ୍ଧିଜୀ ଇଂରେଜ ସରକାରଙ୍କର ତୀବ୍ର ବିରୋଧ କଲେ । କାରଣ ଏହା ଭାରତୀୟ ସ୍ୱାଭିମାନ ପ୍ରତି କଠୋର ଆଘାତ ଦେଇଥିଲା । ଫଳରେ ସ୍ୱାଧୀନତା ଆନ୍ଦୋଳନ ତୀବ୍ରତର ହେଲା ।

ପ୍ରଥମେ ୧୯୪୦ ମସିହାରେ ଆରମ୍ଭ ହେଲା ବ୍ୟକ୍ତିଗତ ସତ୍ୟାଗ୍ରହ । ଜାତୀୟ ସ୍ତରରେ ଗାନ୍ଧିଜୀ ବିନୋବା ଭାବେଙ୍କୁ ପ୍ରଥମ ଓ ଜବାହରଲାଲ ନେହେରୁଙ୍କୁ ଦ୍ୱିତୀୟ ସତ୍ୟାଗ୍ରହୀ ମନୋନୀତ କରିଥିଲେ । ସମ୍ବଲପୁର ଜିଲ୍ଲା ପାଇଁ ବ୍ୟକ୍ତିଗତ ସତ୍ୟାଗ୍ରହର ନିର୍ଦ୍ଦେଶକ ଥିଲେ ଦୟାନନ୍ଦ ଶତପଥୀ । ଜିଲ୍ଲାରେ ବ୍ୟକ୍ତିଗତ ସତ୍ୟାଗ୍ରହରେ ତତ୍କାଳୀନ ଜିଲ୍ଲା କଂଗ୍ରେସ ସଭାପତି ପ୍ରହଲ୍ଲାଦ ରାୟ ଲାଠ, ମନ୍ତ୍ରୀତ୍ୱ ଛାଡ଼ିଥିବା ବୋଧରାମ ଦୁବେ, ଘନଶ୍ୟାମ ପାଣିଗ୍ରାହୀ, ଭଗିରଥୀ ପଟ୍ଟନାୟକ, ଉପେନ୍ଦ୍ର ପାଣିଗ୍ରାହୀ, ଧନଞ୍ଜୟ ପ୍ରଧାନ, ଶ୍ୟାମସୁନ୍ଦର ସାହୁ, ଦିବ୍ୟସୁନ୍ଦର ସାହୁ, ଜଗଦ୍ଭୁଷଣ ଦୁଆନ, ମହେଶ୍ୱର ସାହୁ, ଦାଶରଥି ମହାପାତ୍ର, ପୁରୁଷୋତ୍ତମ ସାହୁ ଓ ନିର୍ଦ୍ଦେଶକ ଦୟାନନ୍ଦ ଶତପଥୀ ।

ଏହାପରେ ୧୯୪୨ ମସିହାରେ ଅଖିଳ ଭାରତ କଂଗ୍ରେସ କମିଟି ପ୍ରଖର ସଂଗ୍ରାମ 'ଭାରତ ଛାଡ଼ ଆନ୍ଦୋଳନ'ର ଆହ୍ୱାନ ଦେଲା । ଗାନ୍ଧିଜୀ ଇଂରେଜମାନଙ୍କୁ ଆହ୍ୱାନ ଦେଲେ 'ଭାରତ ଛାଡ଼' ଓ କଂଗ୍ରେସ କର୍ମୀଙ୍କୁ ମନ୍ତ୍ର ଦେଲେ 'କର ବା ମର' । ତାଙ୍କ ସେକ୍ରେଟାରୀ ପ୍ୟାରେଲାଲଜୀଙ୍କ ହାତରେ ଦେଇଗଲେ ସନ୍ଦେଶ–'ସରକାରଙ୍କୁ ଅଚଳ କର, ଆମେ ଆଜିଠୁଁ ସ୍ୱାଧୀନ । ନିଜେ ନିଜର ନେତା ହୁଅ, କର ବା ମର' । ସମଗ୍ର ଭାରତବର୍ଷ 'ଭାରତ ଛାଡ଼' ଓ 'କର ବା ମର' ଆବାଜରେ ପ୍ରତିଧ୍ୱନିତ ହୋଇ ଉଠିଲା ।

'ଭାରତ ଛାଡ଼' ପ୍ରସ୍ତାବ ଗୃହୀତ ହୋଇଥିବା ଜାତୀୟ କଂଗ୍ରେସର ୮ ଅଗଷ୍ଟ ୧୯୪୨ ମସିହା ଅଧିବେଶନ ବମ୍ବେର ଗୋଆଲିଆଟେଙ୍କ ପଡ଼ିଆରେ ଅନୁଷ୍ଠିତ ହୋଇଥିଲା । ଅଧିବେଶନରେ ୨୫୦ ଜଣ ପ୍ରତିନିଧି ଓ ୧୦ ହଜାର ଜନସାଧାରଣ ଯୋଗ ଦେଇଥିଲେ । ଓଡ଼ିଶାରୁ ଏହି ଅଧିବେଶନରେ ମୋଟ ୫ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ସମ୍ବଲପୁରର ଥିଲେ ଦୁଇ ଜଣ । ଏହା କମ୍ ଗୌରବର କଥା ନୁହେଁ । ପ୍ରତିନିଧିମାନେ ହେଲେ ହରେକୃଷ୍ଣ ମହତାବ, ମାଳତୀ ଚୌଧୁରୀ, ଲକ୍ଷ୍ମୀନାରାୟଣ ମିଶ୍ର, ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ପ୍ରହଲ୍ଲାଦ ରାୟ ଲାଠ । ୯ ତାରିଖ ଭୋରରୁ ଗାନ୍ଧିଜୀଙ୍କ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ସମସ୍ତ ସଦସ୍ୟଙ୍କୁ ବମ୍ବେଠାରେ ଗିରଫ୍ କରାଗଲା । କଂଗ୍ରେସ ନିର୍ଦ୍ଦେଶ ଦେଲା — ବିପ୍ଳବକୁ ଗାଁରୁ ଗାଁକୁ ନେଇଯାଅ । ପୋଲିସ୍ ହାତରୁ ଅସ୍ତ୍ରଶସ୍ତ୍ର ଛଡ଼ାଇ ନେଇ ନିରାପଦ ସ୍ଥାନରେ ରଖ । ରେଳ, ଡାକ ଓ ତାର ସେବାକୁ ବିଚ୍ଛିନ୍ନ କରି ସରକାରଙ୍କୁ ସବୁ ଦିଗରୁ ପଙ୍ଗୁ କରିଦିଅ । ଆନ୍ଦୋଳନ ବ୍ୟାପକ ରୂପ ଧାରଣ କଲା । ଗାଁ ଗାଁରେ ସଂଗ୍ରାମୀମାନେ ସରକାରଙ୍କୁ ଅଚଳ କରିଦେଲେ । ଶାସନ ବ୍ୟବସ୍ଥା ଭୁଶୁଡ଼ି ପଡ଼ିଲା । ଚାଲିଲା ବ୍ୟାପକ ଗିରଫଦାରୀ । ଇଂରେଜ ଭାରତୀୟ ସେନା ଉପରେ ଭରସା ନକରି ଆମେରିକାର ସାହାଯ୍ୟ ଲୋଡ଼ିଲେ । ୧୯୪୦ ବ୍ୟକ୍ତିଗତ ସତ୍ୟାଗ୍ରହରେ କେବଳ ଗିରଫଦାରୀ କରାଯାଇ ଥିଲା,

କିନ୍ତୁ ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନରେ ଗିରଫଦାରୀ ସାଙ୍ଗକୁ ଦମନମୂଳକ ଅତ୍ୟାଚାରର ଅସ୍ତ୍ର ବ୍ୟବହାର କରାଗଲା ।

ସମ୍ବଲପୁର ଜିଲ୍ଲାରେ ଭାରତ ଛାଡ଼ ଆନ୍ଦୋଳନ ବ୍ୟାପକ ରୂପ ଧାରଣ କରିଥିଲା । ବମ୍ବେରୁ ଫେରିବା ରାସ୍ତାରେ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ଗିରଫ ହୋଇଥିଲେ । ଭାଗିରଥୀ ପଟ୍ଟନାୟକଙ୍କ ପତ୍ନୀ ଜଗୋବତୀ ଦେବୀ ବିହାରର ଦୁମ୍‌କାଠାରେ ଗିରଫ ହୋଇଥିଲେ । ଭାଗିରଥୀ ପଟ୍ଟନାୟକ ଆନ୍ଦୋଳନକୁ ବ୍ୟାପକ କରିବା ପାଇଁ ଧମା, ସୋନପୁର, ବରଦ ଗସ୍ତ କରିଥିଲେ । ତାଙ୍କୁ ବରଗଡ଼ଠାରୁ ଭାରତ ରକ୍ଷା ଆଇନରେ ଗିରଫ୍ କରାଗଲା । ପ୍ରାରମ୍ଭରେ ଦୟାନନ୍ଦ ଶତପଥୀ ଜିଲ୍ଲା କଂଗ୍ରେସ କାର୍ଯ୍ୟାଳୟରୁ ବିଭିନ୍ନ ଗ୍ରାମ୍ୟ କେନ୍ଦ୍ର ସହ ଯୋଗାଯୋଗ କରି ଆନ୍ଦୋଳନର ପରିଚାଳନା କରୁଥିଲେ । କିନ୍ତୁ ନୃସିଂହ ଗୁରୁ, ରାମରକ୍ଷା ଶୁକ୍ଳା, ଦୁର୍ଗା ପ୍ରସାଦ ଗୁରୁଙ୍କ ସମେତ ଦୟାନନ୍ଦ ଶତପଥୀଙ୍କୁ ଭାରତ ରକ୍ଷା ଆଇନ୍‌ରେ ଗିରଫ୍ କରି ନିଆଯିବା ପରେ ଶିବନାରାୟଣ ପାଢ଼ୀ ଜିଲ୍ଲା କଂଗ୍ରେସ କାର୍ଯ୍ୟାଳୟରୁ ଆନ୍ଦୋଳନର ପରିଚାଳନା କରିଥିଲେ । ତାଙ୍କୁ ଛାତ୍ର ଦୁର୍ଗା ପ୍ରସାଦ ନାୟକ ସହଯୋଗ କରୁଥିଲେ । ସୁରେନ୍ଦ୍ରନାଥ ଦ୍ୱିବେଦୀ କଟକରେ ଗିରଫ୍ ହେବା ପରେ ତାଙ୍କ ଡାଇରୀରେ କାନ୍ତାରାମ ପୁରୋହିତ ଓ ଲକ୍ଷ୍ମୀନାରାୟଣ ବାବୁଙ୍କ ନାମ ଉଲ୍ଲେଖ ଥିବାରୁ ସେମାନଙ୍କୁ ଗିରଫ୍ କରାଯାଇଥିଲା । ଏ ଦୁହେଁ ଶିବନାରାୟଣ ପାଢ଼ୀଙ୍କୁ ଆନ୍ଦୋଳନ ପରିଚାଳନାରେ ସହଯୋଗ କରୁଥିଲେ । ସେ ସମୟରେ ଭୈରବ ଚନ୍ଦ୍ର ମହାନ୍ତି ସମ୍ବଲପୁରରେ ପ୍ରହ୍ଲାଦ ରାୟ ଲାଠଙ୍କ ଘରେ ଆତ୍ମଗୋପନ କରିଥିଲେ । ଭାରତ ଛାଡ଼ ଆନ୍ଦୋଳନରେ ଜିଲ୍ଲାର ଗ୍ରାମାଞ୍ଚଳର ସଂଗ୍ରାମୀମାନେ ଅଧିକ ସକ୍ରିୟ ଥିଲେ । ପାଣିମୋରା ଭେମଣ୍ଡା, ବରପାଲି, ଭେଡ଼ିଗିଆ, ମାନପୁର, ବାଲିଟିକିରା, ପାଇକମାଲ, ସମଲେଇପଦର ଓ ପଦ୍ମପୁରରେ ଆନ୍ଦୋଳନ ତୀବ୍ର ହୋଇଥିଲା । ବରଗଡ଼ରେ ଦଳେ ଯୁବକଙ୍କୁ ନେଇ ବେଶରକ୍ଷୀ ଦଳ ଗଠିତ ହୋଇଥିଲା । ନିୟମିତ ଶାରୀରିକ ବ୍ୟାୟାମ, ଲାଠି ଓ ଅସ୍ତ୍ରଶସ୍ତ୍ର ବ୍ୟବହାରର ଅଭ୍ୟାସ ଚାଲୁଥିଲା । ଏହି ଦଳର ନେତା ଓ ବ୍ୟାୟାମ ଶିକ୍ଷକଙ୍କୁ ଗିରଫ୍ କରାଗଲା । ଓଡ଼ିଆ, ହିନ୍ଦୀ ଓ ଇଂରେଜୀ ଭାଷାରେ ମୁଦ୍ରିତ କଂଗ୍ରେସ ବାର୍ତ୍ତା ଜିଲ୍ଲା ସାରା ପ୍ରଚାରିତ ହେଲା । ବରଗଡ଼ ଥାନା ଘେରାଉ ଓ ଏସ୍‌. ଡି. ଓ.ଙ୍କୁ ଆକ୍ରମଣ ହେବାରୁ ୯୮ ଜଣ ଗିରଫ୍ ହେଲେ । ଏହି ଆନ୍ଦୋଳନରେ ପାଣିମୋରା ଭଳି ଛୋଟିଆ ଗ୍ରାମରୁ ମୋଟ ୩୨ ଜଣ ଗିରଫ୍ ହୋଇଥିଲେ । ଏହିପରି ଦୃଷ୍ଟାନ୍ତ ଗାଁର ଦୃଷ୍ଟାନ୍ତ ଦେଶରେ କ୍ୱଚିତ ମିଳିବ ।

ସମ୍ବଲପୁର ଜିଲ୍ଲାରେ ଭାରତ ଛାଡ଼ ଆନ୍ଦୋଳନରେ ଘନଶ୍ୟାମ ପାଣିଗ୍ରାହୀ, ପ୍ରଭାବତୀ ଦେବୀ, ଯୁଧିଷ୍ଠିର ମହେର, ପୁରୁଷୋତ୍ତମ ପ୍ରଧାନ, ଫକୀର ବେହେରା, ରାଜେନ୍ଦ୍ର ପଣ୍ଡା, ଧନସିଂହ ପ୍ରଧାନ, ଶଙ୍କର ପ୍ରଧାନ, ଋଷି ସରାଫ୍, ରାମଭରୋସେ, ଦୟାନିଧି ନାୟକ, ଜିତେନ୍ଦ୍ରିୟ ପ୍ରଧାନ, ଶ୍ୟାମସୁନ୍ଦର ସାହୁ, ରାଧବନ୍ଦ୍ର ପ୍ରଧାନ, ଦିବାକର ମିଶ୍ର, ବିରଞ୍ଚି ନାରାୟଣ ପ୍ରଧାନ, ରାମଚନ୍ଦ୍ର ପୁରୀ, ପାର୍ବତୀ ଗିରି, ମାୟାଧର ପୁରୋହିତ, କୁବେର ଗିରି, କୈଳାଶ ରଣା, ଚୈତନ୍ୟ ସାହୁ, ବିଦ୍ୟାଧର ପ୍ରଧାନ, ଲକ୍ଷ୍ମଣ ପୂଜାରୀ, ଗଣ୍ଡୁ ପରିଡ଼ିଆ, ଦିବ୍ୟସୁନ୍ଦର ସାହୁ, ଉଗ୍ରସେନ ବବରତୋର, ମଦନଗୋପାଳ ସରାଫ, ଜଗନ୍ନାଥ ଭୁଆନ, ପୂର୍ଣ୍ଣଚନ୍ଦ୍ର ପ୍ରଧାନ, ରାଧେଶ୍ୟାମ ମେହେର, ସନ୍ତୋଷ ସ୍ୱାଇଁ, ବିହାରୀରାମ ତନ୍ତୀ, ମଙ୍ଗଳ ପ୍ରସାଦ ଗିରି, ଶ୍ରୀବସ୍ତ ନାୟକ, ଯୋଗେନ୍ଦ୍ର ଦୋରା, ପ୍ରେମାନନ୍ଦ ମେହେର, ଦେବାନନ୍ଦ ଗୁଣ୍ଡ, ଆନନ୍ଦ ଚନ୍ଦ୍ର ମେହେର, ହୃଷିକେଶ ନାୟକ, ଚନ୍ଦ୍ରଭାନୁ ପରିଡ଼ା, କୁଞ୍ଜବିହାରୀ ଦାଶ, ବିଶ୍ୱେଶ୍ୱର ଦାଶ, ଚାଟିକାରୀ ପୁରୋହିତ, ରାମଚନ୍ଦ୍ର ନନ୍ଦ, ଭୀମସେନ ସାହୁ, ହ୍ରଷିକେଶ ମହାପାତ୍ର, ବାବାଜୀ ମେହେର, ଅର୍ଜୁନ ଗୁପ୍ତ, ମଦନ ଭୁଏ, ଶୁକଦାରଣ ଭୁଏ, ହରିହର ଭୋଇ, ଦାଶରଥି ନାୟକ, କମ୍ବରା ସାହୁ, ଦ୍ୱାଦଶ ରଣା, ସୁନାଧର ସାହୁ, ଯଶୋବନ୍ତ ଭୋଇ, ଚୈତନ୍ୟ ସରାଫ, ଧନୁ ସାହୁ, ପ୍ରଭାକର ପ୍ରଧାନ, ଗୋକୁଳ ଚନ୍ଦ୍ର ନାୟକ, କହ୍ନାଇଲାଲ ସାହୁ, ଚନ୍ଦ୍ରଶେଖର ସାହୁ, ଧନେଶ୍ୱର ପ୍ରଧାନ, ଧନଞ୍ଜୟ ପ୍ରଧାନ ପ୍ରମୁଖ ଗିରଫ୍ ହୋଇଥିଲେ । ପାଇକମାଳର ଅଲେଖ ପାତ୍ର ନିମାପଡ଼ାରେ ଗିରଫ୍ ହୋଇଥିଲେ । ସମ୍ବଲପୁର ବାସିନ୍ଦା ତତ୍କାଳୀନ ରେଭେନ୍‌ସା କଲେଜ ଛାତ୍ର ବିଷ୍ଣୁ ପ୍ରସାଦ ମିଶ୍ର କଟକରେ ଗିରଫ୍ ହୋଇଥିଲେ ।

ଭାରତ ଛାଡ଼ ଆନ୍ଦୋଳନରେ ସମ୍ବଲପୁର ଜିଲ୍ଲାର ଦୟାନନ୍ଦ ଶତପଥୀ ସର୍ବାଧିକ ସାଢ଼େ ତିନି ବର୍ଷ କାରାବରଣ କରିଥିଲେ । ୧୯୪୫ ମସିହାରେ ବ୍ରହ୍ମପୁର ଜେଲରୁ ଖଲାସ ହେବା ପରେ ମଧ୍ୟ ତାଙ୍କୁ ଏକ ବର୍ଷ ଗୃହବନ୍ଦୀ ଭାବରେ ରଖା ଯାଇଥିଲା ।

ବୁଢ଼ାରଜା, ସମ୍ବଲପୁର–୭୬୮୦୦୪



# ଅମର ଶହୀଦ କଷ୍ଟି ଡାକୁଆ

✳ ସତ୍ୟବାଦୀ ବଳିଆରସିଂହ ✳

ବ୍ରିଟିଶ ଶାସିତ ଓଡ଼ିଶା ଓ ୨୪ଟି ପୂର୍ବତନ ଗଡ଼ଜାତ ରାଜ୍ୟକୁ ନେଇ ଆଧୁନିକ ଓଡ଼ିଶାର ସୃଷ୍ଟି । ସେଥି ମଧ୍ୟରୁ ମୟୂରଭଞ୍ଜ, ପାଟଣା, ସୋନପୁର ଓ କଳାହାଣ୍ଡିର ଶାସକମାନଙ୍କୁ ମହାରାଜା ଓ ଅନ୍ୟ ଗଡ଼ଜାତରେ ଶାସକମାନଙ୍କୁ ରାଜା କୁହାଯାଉଥିଲା । ଏହି ରାଜା ମହାରାଜାମାନଙ୍କ ଶାସନରେ ଗଡ଼ଜାତବାସୀ ପ୍ରଜା ବହୁ ଅକଥନୀୟ ଅତ୍ୟାଚାର ସହ୍ୟ କରିଥିଲେ ।

ଗଡ଼ଜାତ ଶାସନରେ ଅନ୍ୟାୟ ଅନୀତି ଚରମ ସୀମାରେ ପହଞ୍ଚିଥିଲା । କଥା କଥାକେ ଲାଠି ଓ ବନ୍ଧୁକ ପ୍ରହାରରେ ପ୍ରଜାଙ୍କ ଶୋଣିତ ଗଡ଼ ରଞ୍ଜିତ ହେଉଥିଲା । ଫଳରେ ଦୀର୍ଘଦିନର ଶୋଷଣ ଶାସନ, ଜୁଲୁମ୍, ବେଠି ଓ ବେଗାରୀ ବିରୁଦ୍ଧରେ ପ୍ରଜାମାନେ ସଙ୍ଗଠିତ ହୋଇ ପ୍ରଜାମଣ୍ଡଳ ଗଠନ କଲେ । ଢେଙ୍କାନାଳ, ରଣପୁର, ତାଳଚେର, ନୀଳଗିରି, ନୟାଗଡ଼ ଓ ଖଣ୍ଡପଡ଼ା ପ୍ରଭୃତି ଗଡ଼ଜାତରେ ପ୍ରଜାମଣ୍ଡଳ ଗଠିତ ହୋଇ ଭୟଙ୍କର ରୂପ ଧାରଣ କରିଥିଲା । ଢେଙ୍କାନାଳରେ ଦମନଲୀଳାର ଶିକାର ହୋଇ ବାର ବର୍ଷର ବାଳକ ବାଜି ରାଉତ ଶହୀଦ ହେଲା । ଅଥଚ ଦମନଲୀଳାର ମୁଖ୍ୟ ନାୟକ ପ୍ରବଳ ପ୍ରତାପର ଗୋରା ପଲିଟିକାଲ ଏଜେଣ୍ଟ ମେଜର ବେଜଲଗେଟ୍ ରଣପୁରଠାରେ ବିଦ୍ରୋହୀ ପ୍ରଜାଙ୍କ ଠେଙ୍ଗାମାଡ଼ରେ ନିହତ ହେଲା । ଫଳରେ ରଣପୁର ପ୍ରଜା ଆନ୍ଦୋଳନର ଅଗ୍ରଦୂତ ମହାନ୍ ବିପ୍ଳବୀ ଦିବାକର ପରିଡ଼ା ଓ ତାଙ୍କ ସାଥୀ ରଘୁନାଥ ମହାନ୍ତି ଫାଶୀ ବରଣ କରି ଶହୀଦ ହେଲେ ।

ରଣପୁର ସୀମାକୁ ଲାଗି ନୟାଗଡ଼ । ରଣପୁର ଘଟଣା ପଡ଼ୋଶୀ ନୟାଗଡ଼ ପ୍ରଜାଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା । ନୟାଗଡ଼ରେ ଭାରତ ଛାଡ଼ ଆନ୍ଦୋଳନର ଡାକରା ପ୍ରତିଧ୍ୱନିତ ହେଲା । ପ୍ରଜାମାନେ ପ୍ରଜାପୀଡ଼ନ ଶାସନ ବିରୁଦ୍ଧରେ ସମ୍ମୁଖୀନ ହୋଇ ସଂଗ୍ରାମ ପଥକୁ ଆବୋରି ନେଲେ । ରଜା, ରାଜପରିବାର ତଥା ରାଜ କର୍ମଚାରୀମାନଙ୍କର ଅନ୍ୟାୟ, ଅନୀତି, ଦମନ ତଥା ମାଗଣ, ରସଦ, କର, ଜବରଦସ୍ତ ପାଉଣା ବିରୁଦ୍ଧରେ ପ୍ରଜାମଣ୍ଡଳ ଗଠିତ ହୋଇ ପ୍ରତିବାଦ କଲା ।

ନୟାଗଡ଼ ପ୍ରଜା ଆନ୍ଦୋଳନ ଦିନକୁ ଦିନ ଭୟଙ୍କର ହେଲା । ଏଥିରେ ରାଜା ଆତଙ୍କିତ ହୋଇ ଉଠିଲେ । ପ୍ରଜାମଣ୍ଡଳର ସଭାପତି ବାଞ୍ଛାନିଧି ସେନାପତି ଓ ଅନ୍ୟାନ୍ୟ ବିଶିଷ୍ଟ କର୍ମୀ ଶ୍ରୀଧର ଦାସ, ସୁକି ବେହେରା, ଲକ୍ଷଣ ମହାରଣାଙ୍କ ସମେତ ୧୯ ଜଣଙ୍କୁ ଗିରଫ କରାଗଲା । ଏହା ଫଳରେ ରାଜ୍ୟରେ ଘୋର ଉତ୍ତେଜନା ପ୍ରକାଶ ପାଇଲା ।

ପ୍ରଜାମଣ୍ଡଳର ନେତାମାନଙ୍କୁ ମୁକ୍ତ କରିବା ପାଇଁ ପ୍ରଜାମାନେ ତତ୍ପର ହୋଇଉଠିଲେ । ସର୍ବଶ୍ରୀ ଆନନ୍ଦ ଚନ୍ଦ୍ର ସ୍ୱାଇଁ, ନାରାୟଣ ଉପାଧ୍ୟାୟ, ସଦାଶିବ ଷଡ଼ଙ୍ଗୀ, ପୂର୍ଣ୍ଣଚନ୍ଦ୍ର ମଲିକ ପ୍ରମୁଖଙ୍କ ନେତୃତ୍ୱରେ ପ୍ରଜା ଜାଗରଣ କାର୍ଯ୍ୟ ଚାଲିଲା । ଫଳରେ ୧୪-୯-୧୯୪୨ ତାରିଖ ଦିନ ଶତାଧିକ ପ୍ରଜା ଗଞ୍ଜାମ ଜିଲ୍ଲାର କୁମ୍ଭାପଡ଼ାରେ ଏକ ସଭା କରି ସେମାନଙ୍କ ପ୍ରିୟ ନେତାମାନଙ୍କୁ ଉଦ୍ଧାର କରିବା ପାଇଁ ପ୍ରତିଜ୍ଞାବଦ୍ଧ ହେଲେ ।

ଏହି ସଭାରେ ନୟାଗଡ଼ର ବିଭିନ୍ନ ପ୍ରାନ୍ତରରୁ ପ୍ରଜାମାନେ ସଂଗଠିତ ହୋଇ ରାଜପ୍ରାସାଦ ଅଭିମୁଖେ ଆସିବା ପାଇଁ ସ୍ଥିର ହେଲା । ଏ ଅଭିଯାନ ଦୁଇଟି ଦଳ ହୋଇ ମାଳ ଅଞ୍ଚଳରୁ ବାହାରିବା ସିଦ୍ଧାନ୍ତ ହେଲା । ଆନନ୍ଦ ଚନ୍ଦ୍ର ସ୍ୱାଇଁ ବରକୋଳା ମାଳ ଅଞ୍ଚଳର ଓ ସଦାଶିବ ଷଡ଼ଙ୍ଗୀ ଗୋଛାମାଳ ଅଞ୍ଚଳର ଦାୟିତ୍ୱରେ ରହିଲେ । ଏଥିରେ ଠିକ୍ ହେଲା ଗୋଟିଏ ଦଳ ମାଳ ସଡ଼କ ଦେଇ ନୂଆ ଗାଁ ବାଟେ ନୟାଗଡ଼ ଯିବେ ଏବଂ ଅନ୍ୟ ଦଳଟି ମାଳ ଅଞ୍ଚଳରୁ ବାହାରି ବାହାଡ଼ାଝୋଲା ଦେଇ ମହିପୁର ବାଟେ ନୟାଗଡ଼ରେ ପହଞ୍ଚିବେ । ଏହି ଶାଖା ପ୍ରଶାଖାରେ ବିଭକ୍ତ ହୋଇ ଓଛିଆ ମାଳ, ଗୋଛା ମାଳ, ତୋଲବି ମାଳ ଏବଂ ଗୋଡ଼ିପଡ଼ା ଓ ଶରଣକୁଳ ଅଞ୍ଚଳ ଜନସାଧାରଣଙ୍କୁ ଏକତ୍ରିତ କରି ରାଜ୍ୟର ରାଜଧାନୀ ନୟାଗଡ଼ଠାରେ ସମବେତ ହେବା ପାଇଁ ସ୍ଥିର ହେଲା । ରାଜତନ୍ତ୍ରର ବିଲୋପସାଧନ ହିଁ ପ୍ରଜାମାନଙ୍କର ମୂଳମନ୍ତ୍ର ହେଲା ।

ସ୍ୱାଧୀନତାର ସୁଖ ସ୍ୱପ୍ନ ପ୍ରଜାମାନଙ୍କୁ ବିଭୋର କଲା । ବାସ୍ତବିକ ସୁଖ ପ୍ରାପ୍ତି ଏବଂ ସୁଖଭୋଗ ଅପେକ୍ଷା ସୁଖଭୋଗ କରିବାର ଆଶା ଶତଗୁଣେ ସୁଖମୟ, ସହସ୍ରଗୁଣେ ମଧୁମୟ, ଲକ୍ଷଗୁଣେ ଅନୁପ୍ରେରଣା ବ୍ୟଞ୍ଜକ ଏବଂ କୋଟିଗୁଣେ ଉତ୍ସାହ-ଉନ୍ମାଦନା-ଶକ୍ତି ସାହସ ଦାୟକ । ପରାଧୀନତାର ଅନ୍ଧକାର ମଧ୍ୟରେ ସ୍ୱାଧୀନତାର ଝଲକ ସୁନ୍ଦର ଚନ୍ଦ୍ରାଲୋକରେ ଆବିର୍ଭୂତ ହେଲା । ନୟାଗଡ଼ର ଜନତା ଦୃଢ଼ ସଂକଳ୍ପ ନେଇ ପ୍ରଜାମଣ୍ଡଳ ଯଜ୍ଞକୁଣ୍ଡକୁ ଡେଇଁ ପଡ଼ିଲେ ।

ନୟାଗଡ଼ ଅଭିଯାନ ନିମନ୍ତେ-ବରକୋଳା ମାଳ ଅଞ୍ଚଳରେ ଏକ ସାଧାରଣ ସଭା ଅନୁଷ୍ଠିତ ହେଲା । କଷ୍ଟି ଡାକୁଆ ହେଲେ ଏହାର

ସଭାପତି । ସେ ମାଲୁଆ ପ୍ରଜାମାନଙ୍କୁ ପ୍ରଜାମଣ୍ଡଳ ପ୍ରତି ଅନୁରକ୍ତ ହେବା ପାଇଁ ପ୍ରେରଣା ପ୍ରଦାନ କଲେ । ମହାତ୍ମାଗାନ୍ଧୀଙ୍କ ବାଣୀ "କର ବା ମର" ପାଳନ କରିବା ପାଇଁ ସମସ୍ତଙ୍କୁ ନିବେଦନ କଲେ । ତାଙ୍କର ଉଦ୍‌ବୋଧନମୂଳକ ଭାଷଣ ମନ୍ତ୍ର ମୁଗ୍ଧ ଭଳି କାର୍ଯ୍ୟ କଲା । ୧୯୪୨ ଅକ୍ଟୋବର ୯ ତାରିଖ ଦିନ ଅନୁଷ୍ଠିତ ଏହି ସଭାରେ ଅନ୍ଧାରୀ ଶାସନ ଲୋପ କରିବା ପାଇଁ ବଜ୍ର କଣ୍ଠରେ ସମବେତ ଜନତା ଶପଥ ନେଇଥିଲେ । ସେଦିନ ଆନନ୍ଦ ଚନ୍ଦ୍ର ସ୍ୱାଇଁଙ୍କ ନେତୃତ୍ୱରେ ସେଠାକୁ ଆସିଥିବା ଶତାଧିକ ପ୍ରଜାମଣ୍ଡଳ କର୍ମୀଙ୍କ ସମେତ ସ୍ଥାନୀୟ କର୍ମୀମାନେ ବିପ୍ଳବୀ କଣ୍ଟି ଡାକୁଆଙ୍କ ଆତିଥ୍ୟ ଗ୍ରହଣ କରିଥିଲେ ।

ବିପ୍ଳବୀ କଣ୍ଟି ଡାକୁଆଙ୍କ ଘର ମହୀପୁରଠାରୁ ୧୧ କିଲୋମିଟର ଦୂର ନିପଣ ମାଳ ଅଞ୍ଚଳର ପାଲବା ପର୍ବତର ପାଦଦେଶରେ ଅବସ୍ଥିତ 'କୁସବିଡ଼ା' ଗ୍ରାମରେ । ୧୯୦୭ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବା କଣ୍ଟି ଥିଲେ ପିତା ଅର୍ଜୁନ ଡାକୁଆ ଓ ମାତା ନାରବା ଦେବୀଙ୍କର ଦ୍ୱିତୀୟ ସନ୍ତାନ । କଣ୍ଟି ଡାକୁଆଙ୍କ କୁସବିଡ଼ା ଗ୍ରାମରୁ ବରକୋଳା ମାଳ ଅଞ୍ଚଳର ବିପ୍ଳବୀ ଜନତାଙ୍କୁ ଦୁଇ ଭାଗରେ ବିଭକ୍ତ କରି ଅଭିଯାନ ଚାଲିଲା । ଗୋଟିଏ ଦଳର ନେତୃତ୍ୱ ନେଲେ ଆନନ୍ଦ ଚନ୍ଦ୍ର ସ୍ୱାଇଁ ଓ ଅନ୍ୟଟିର କସ୍ତୁରି ସଭିଡ଼ା । ସମସ୍ତଙ୍କ କାନ୍ଧରେ ମୁଣ୍ଡ ଉଚ୍ଚା ନିଦା ବାଉଁଶର ଠେଙ୍ଗା, ଗୋଟିଏ ହାତରେ ଫାଶା ଓ ଅନ୍ୟ ହାତରେ ମୁକ୍ତି ମଶାଲ ନିଆଁ ହୁଳା । ମୁଖରେ ମହାତ୍ମାଗାନ୍ଧୀ ଓ ପ୍ରଜାମଣ୍ଡଳର ଜୟ ଧ୍ୱନି । ଶତସିଂହର ବଳ ନେଇ ପ୍ରଜାମାନେ ଆଗେଇ ଚାଲିଲେ । ସତେ ଯେପରି ଅତିକାୟ ଅଚେତ ସମାଜ ଦୀର୍ଘଦିନର ନିଦ୍ରାପରେ ଆଜି ଜାଗି ଉଠିଛି ।

ଏ ଅଭିଯାନରେ ସ୍ଥିର ହେଲା ସରକାରୀ କୋଠାବାଡ଼ି ପୋଡ଼ି ଧ୍ୱଂସ କରିବା, ଫୋନ୍‌ତାର କାଟି ନୟାଗଡ଼ ସହ ସଂଯୋଗ ଛିନ୍ନ କରିବା ଓ ଏ ଅଞ୍ଚଳକୁ ରାଜତନ୍ତ୍ରରୁ ମୁକ୍ତ କରିବା । ଆନନ୍ଦ ସ୍ୱାଇଁଙ୍କ ଦଳ ପ୍ରଥମେ ମାଳ ଅଞ୍ଚଳ ବରକୋଳା ଡାକ ବଙ୍ଗଳାରେ ପହଞ୍ଚିଲେ । ସେତେବେଳକୁ ଅର୍ଦ୍ଧରାତ୍ରରୁ ଅଧିକ ସମୟ ହୋଇଥାଏ । ଡାକ ବଙ୍ଗଳାରେ ଥିବା କର୍ମଚାରୀଙ୍କୁ ହତ୍ୟାକରିବା ଅଭିଳାଷ ନଥିବାରୁ ପ୍ରଥମେ ତିନୋଟି ଧମକ ଡାକ ଦେଲେ । ଏହି ଡାକିବା ଦ୍ୱାରା ବଙ୍ଗଳା ମଧ୍ୟରେ ଶୟନରତ ଆଠଜଣ ପୋଲିସ କର୍ମଚାରୀ ବନ୍ଧୁକ ଆଦି ଛାଡ଼ି ପ୍ରାଣ ଭୟରେ ଜଙ୍ଗଲକୁ ଦୌଡ଼ି ପଳାଇଲେ । ଏହାପରେ କର୍ମୀମାନେ ଜୟ ଧ୍ୱନୀ କରି ଡାକ ବଙ୍ଗଳାରେ ନିଆଁ ଲଗାଇଦେଲେ । ତାହା ପୋଡ଼ି ଧ୍ୱଂସ ହୋଇଗଲା । ସେହି ରାତ୍ରରେ ଏହି ଅଭିଯାନ ନୂଆଁ ଗାଁ ଅଭିମୁଖେ ଅଗ୍ରସର ହେଲା । ବାଟରେ ଯେଉଁଠି ରାଜ ସରକାରର କୋଠାବାଡ଼ି ଆଖିରେ ପଡ଼ିଲା, ସେଥିରେ ନିଆଁ ଲଗାଇଦେଲେ ।

ବିପ୍ଳବୀ ଜନତାର ଏହି ପଟୁଆର ନୂଆଁ ଗାଁରେ ପହଞ୍ଚିଲା ବେଳକୁ ୧୯୪୨ ଅକ୍ଟୋବର ଦଶତାରିଖ ସକାଳ ହେଲା । ସେଦିନ ଥିଲା ପ୍ରତିପଦ ଯୁକ୍ତ ଆଶ୍ୱିନ ଅମାବାସ୍ୟା । କୁହୁଡ଼ି ପାଇଁ ହେତୁ ଦିବାଲୋକର ସ୍ପଷ୍ଟ ଛାପ ବାରି ହେଉ ନଥାଏ । କିନ୍ତୁ ଏହି ଦଳ ବୀରବାଦ୍ୟସହ ଆଗକୁ ମାଡ଼ି ଚାଲିଥାଏ । କିନ୍ତୁ ଥାନା ନିକଟ ଛକରେ ପହଞ୍ଚୁ ପହଞ୍ଚୁ ସେମାନେ ଦେଖିଲେ ଝିଙ୍କି ମନାଇଙ୍କ ସହ ପୋଲିସ୍ ବାହିନୀ । ମୁକ୍ତି ସଂଗ୍ରାମୀ ମାନଙ୍କୁ କୌଣସି ସତର୍କ ସଙ୍କେତ ନଦେଇ ପୋଲିସର ବନ୍ଧୁକରୁ ଗୁଳି ଫୁଟିଲା । ସେ ଗୁଳି ଆସି ବାଜିଲା କନ୍ଧ ସର୍ଦ୍ଦାର ବିପ୍ଳବୀ କଣ୍ଟି ଡାକୁଆଙ୍କ ପେଟରେ—ପେଟରୁ ଅନ୍ତ ବୁରୁଜା ପଦାକୁ ବାହାରି ଆସିଲା । ସେ ପେଟ ଉପରେ ହାତ ଦେଇ ଅତି ଅସ୍ପଷ୍ଟ ଭାଷାରେ ଶେଷକଥା କହିଲେ, "ମହାତ୍ମାଗାନ୍ଧୀ କି ଜୟ, ଅନ୍ଧାରୀ ଶାସନ ଲୋପ ହେଉ ।"

ଆଦିବାସୀ ସମ୍ପ୍ରଦାୟ କନ୍ଧଜାତିର ମହାନ୍ ସଂଗ୍ରାମୀ କଣ୍ଟି ଡାକୁଆ ଆଜି ନାହାନ୍ତି । କିନ୍ତୁ ସେ କାଳଜୟୀ ଓ ଅମର । ଦେଶ ଓ ଦଶର ସେବାକରି ସେ ଭାରତୀୟ ଜନତାର ଚିରଦିନ ନମସ୍ୟ ହୋଇ ରହିବେ । ତାଙ୍କ ହତ୍ୟାପରେ ଜନତାର ସ୍ୱାଧୀନତା ପ୍ରାପ୍ତିର ମନୋବଳକୁ ଭାଙ୍ଗିଦେବା ପାଇଁ ବହୁ ଅକଥନୀୟ ଅତ୍ୟାଚାର କରାଯାଇଛି । ସେ ଅଞ୍ଚଳର ଲୋକେ ବହୁ ଦୁଃଖ ନିର୍ଯ୍ୟାତନା ସହିଛନ୍ତି । କିନ୍ତୁ ରାଜତନ୍ତ୍ରର ସେହି ଦମନକାରୀ ଶାସନ ପରିବର୍ତ୍ତେ ଆଜି ଗଣତନ୍ତ୍ର ଶାସନ ବିରାଜମାନ କରିଛି । ଆଦିବାସୀ କନ୍ଧ ସର୍ଦ୍ଦାର ମହାବୀର ଦୋହରା ବିଶୋୟୀ ଓ ଚକ୍ରା ବିଶୋୟୀଙ୍କ ଭଳି କନ୍ଧ ନେତା କଣ୍ଟି ଡାକୁଆ ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଏକ ଉଜ୍ଜ୍ୱଳ ତାରକା ଭଳି ଯାଜ୍ୱଲ୍ୟମାନ ହୋଇଛନ୍ତି । ତାଙ୍କର ଅସୀମ ତ୍ୟାଗ, ସାହାସ ଓ ଶୌର୍ଯ୍ୟ ମାନବ ଜାତି ପାଇଁ ଚିର ସ୍ମରଣୀୟ ହୋଇ ରହିବ ।

ଗ୍ରା/ପୋ: ଗଡ଼ ବାଣୀକିଲୋ,
ଜି: ନୟାଗଡ଼—୭୫୨୦୭୬ ।



# ଦେଶପ୍ରେମୀ ଗୋପବନ୍ଧୁ

* ଅଧ୍ୟାପକ ଜନ୍ମେଜୟ ଚୌଧୁରୀ *

ସେମାନଙ୍କ ପାଇଁ ମୃତ୍ୟୁ ମାରକ ନୁହେଁ । ସଂଜୀବନ ପାଳିତ ଜୀବନ ସେମାନଙ୍କ ପାଇଁ ଅନ୍ତିମ ନୁହେଁ, ତାହା ପ୍ରସାରିତ ହୁଏ ପଞ୍ଚଭୂତକୁ ଉଲ୍ଲଙ୍ଘନ କରି ବିଜ୍ଞାନମୟ ଆନନ୍ଦମୟ ସତ୍ତା ଅଭ୍ୟନ୍ତରକୁ । ଶେଷ ଯାତ୍ରା ଶୋକାବହ, ସେହିମୁହୂର୍ତ୍ତ ଯାଏ, ତା'ପର ଚିନ୍ତନରେ ପାଳିତ ଶରୀର ପାତରେ ଅର୍ଜିତ କୀର୍ତ୍ତି ସକଳ ଉଦ୍ଭାସିତ ହୁଅନ୍ତି ସେମାନଙ୍କର। ତେଣୁ ସେମାନେ କ୍ଷଣଜନ୍ମା, ପୁଣ୍ୟଜନ୍ମା, ପୂର୍ଣ୍ଣପୁରୀ, ଯାହାଙ୍କ ପାଇଁ ଇତିହାସ ସମ୍ମାନିତ ହୁଏ, ତା'ର ବକ୍ଷରେ ଏମାନଙ୍କର ପାଦ ଲାଞ୍ଛନ ଧାରଣ କରି । ମଣିଷର ଜୀବନ ପରିଧି ଦୈନିକ ଚବିଶ ଘଣ୍ଟା ମାତ୍ର, ନିଦ୍ରା ବ୍ୟତୀତ ଅନ୍ୟ ସମୟରେ ଉପଯୋଗ ତାର ନିଜ ସାଧନାର ବାର୍ତ୍ତାବହ । ପଣ୍ଡିତ ଗୋପବନ୍ଧୁ ଅତନ୍ଦ୍ର ଏକ ସାଧକ । ଉତ୍କଳକୁ ଉଜ୍ଜୀବନ ଦେବା ପାଇଁ ତାଙ୍କର ଶେଷ ମୁହୂର୍ତ୍ତ ଯାଏ କୀର୍ତ୍ତି ବହୁଳ ପଞ୍ଜିକାର ପୃଷ୍ଠା ଓଲଟାଇବା ପ୍ରତ୍ୟେକ ଓଡ଼ିଆର କର୍ତ୍ତବ୍ୟ ।

ଉତ୍କଳମଣି ଗୋପବନ୍ଧୁ ମହାନ୍ ସେବା ଧର୍ମ ଓ ଜାତୀୟ ଜୀବନର ବଳିଷ୍ଠ ପରିପୂରକ ଭାବରେ ପ୍ରତ୍ୟେକ ଜନ ମାନସରେ ସୁପରିଚିତ । ତାଙ୍କର ନିରବଚ୍ଛିନ୍ନ ଦିବ୍ୟସାଧନା ଓ ଆଦର୍ଶବୋଧକୁ ନୈରାଶ୍ୟ, ବାଧା, ବିଘ୍ନ, ନିନ୍ଦା ଓ ଅପମାନ ପ୍ରତିହତ କରିପାରି ନଥିଲା । ତାଙ୍କର ପ୍ରତିଷ୍ଠା ଯୋଗୁଁ ସେ ଆଜି ଅମରତ୍ୱ ଲାଭ କରିଛନ୍ତି । ତାଙ୍କର ସାହିତ୍ୟ ସାଧନ ଥିଲା ଗତମୁଖୀ ଓ ଉଦ୍‌ବୋଧନମୟୀ । ଓଡ଼ିଶା ଇତିହାସ ତଥା ଓଡ଼ିଆ ସାହିତ୍ୟରେ ତା'ର ସମ୍ମାନ ଯୋଗ୍ୟ ଆସନରୁ କେହି ତାଙ୍କୁ ଟିକିଏ ମୁଦ୍ଧା ଘୁଞ୍ଚାଇ ପାରିବ ନାହିଁ । ବିଖ୍ୟାତ୍ ସିପାହୀ ବିପ୍ଳବର ବିଂଶ ବର୍ଷ ପରେ ସମଗ୍ର ଭାରତବର୍ଷର ରାଜନୀତିକୁ ଯେତେବେଳେ ବିଦେଶୀ ଶାସନର ଅନୀତି, ଅରାଜକତା ଓ ଅତ୍ୟାଚ୍ଚାର ଗ୍ରାସ କରିଥିଲା ଏବଂ ଯେତେବେଳେ ଭାରତୀୟ ଜନତା ଦମନ, ଶୋଷଣ ଓ ପେଷଣରେ ନିଷ୍ପେଷିତ ହେଉଥିଲେ, ସେତେବେଳେ ୧୮୭୭ ମସିହା ଅକ୍ଟୋବର ମାସ ୯ ତାରିଖରେ ପବିତ୍ର ନୀଳାଚଳ ପୀଠ ଅନ୍ତର୍ଗତ ସାକ୍ଷୀଗୋପାଳ ନିକଟସ୍ଥ ଭାର୍ଗବୀ ନଦୀ ଉପକୂଳବର୍ତ୍ତୀ ସୁଆଣ୍ଡୋ ଗ୍ରାମରେ ନବଜୀବନର ଶ୍ରେଷ୍ଠ ପ୍ରତିନିଧି ଦୀନବନ୍ଧୁ ଗୋପବନ୍ଧୁଙ୍କର ଆବିର୍ଭାବ ବାସ୍ତବରେ ଏକ ଦେବାଶୀର୍ବାଦ ସ୍ୱରୂପ । ବିଧାତାର ନିର୍ଦ୍ଦେଶ ଏଭଳି ନିଷ୍ଠୁର ଯେ, ଗୋପବନ୍ଧୁଙ୍କ ଜନ୍ମର ଅଳ୍ପ ଦିନ ମଧ୍ୟରେ ତାଙ୍କ ମାତାଙ୍କର ପରଲୋକ ଘଟିଥିଲା । ଗୋପବନ୍ଧୁଙ୍କ ପିଉସୀ କମଳା ଦେବୀ ଗୋପବନ୍ଧୁଙ୍କର ଲାଳନପାଳନ ଭାର ବହନ କରିଥିଲେ । ଏହି ପିଉସୀଙ୍କ ପ୍ରତି ଆନ୍ତରିକ କୃତଜ୍ଞତା ଜ୍ଞାପନ କରି ପରେ ଗୋପବନ୍ଧୁ 'ମୋ ନାନୀ' ନାମକ ଏକ କ୍ଷୁଦ୍ର କବିତାରେ ଲେଖିଛନ୍ତି :—

ଆବାଲ୍ୟ ବିଧବା ଆହା ! କେବେ ମାଏଁ ବାରେ
ଭୋଗିନାହିଁ ଦିବ୍ୟ ସୁଖ ଦାମ୍ପତ୍ୟ ପ୍ରଣୟ
ପର ସେବା ବ୍ରତେ ନିଜ ଜୀବନ — ସଞ୍ଚୟ
ବ୍ୟୟ କରିବାକୁ ତବ ଜନ୍ମ ଏ ସଂସାରେ ।

XX XX XX

ତୁମ୍ଭ ରୀତି ଆଚରିଲେ ସକଳ କାମିନୀ
ଓହ୍ଲାଇ ଆସନ୍ତା ସ୍ୱର୍ଗ ଏ ମର୍ତ୍ତ୍ୟ ଜଗତେ
ତୁମ୍ଭର ନିଷ୍କାମ ସ୍ନେହ ସଦା ଥିବି ମାନି
ଯହିଁରେ ସ୍ମରୁଥିବି ନିତି, "ନାନୀ, ନାନୀ" ।

ଗୋପବନ୍ଧୁ ସମସାମୟିକ ଉତ୍କଳୀୟ ଚଟଶାଳୀର ପ୍ରାଥମିକ ପାଠ୍ୟକ୍ରମ ଶେଷ କରିବା ପୂର୍ବରୁ ତଦାନୀନ୍ତନ ବ୍ରାହ୍ମଣ ସମାଜର ପ୍ରଚଳିତ ପ୍ରଥାନୁସାରେ ତାଙ୍କୁ ବାର ବର୍ଷ ବୟସରେ ପଢ଼ୋଶୀ ଗ୍ରାମର ମୋଟି ନାମକ 'ଜୀବନ-ପ୍ରଭାତ' ଅତିକ୍ରମ କରିନଥିବା, 'ଭବ-ଦୁଃଖ ଝଡ଼ଝଞ୍ଜା ବାତ' ଭୋଗି ନଥିବା, 'ତରୁଣ-ଛଟକ ଭାବ ଅପାଙ୍ଗ-ସୁହାଣୀ ଚତୁର ସୁହାସ' ଜାଣିନଥିବା ଜଣେ ନଅ ବର୍ଷ ବୟସ୍କା ସରଳା ବାଳିକାର ପାଣି ଗ୍ରହଣ କରିବାକୁ ପଡ଼ିଥିଲା । ୧୮୯୯ରେ ସେ ମାଟ୍ରିକ୍ୟୁଲେସନ୍ ପାସ୍ କରି ଏଫ୍. ଏ. ପଢ଼ିବା ପାଇଁ ରେଭେନ୍ସା କଲେଜରେ ନାମ ଲେଖାଇବା ପୂର୍ବରୁ ତାଙ୍କ ପିତାଙ୍କର ପରଲୋକ ଘଟିଥିଲା । ୧୯୦୧ରେ ଏଫ୍. ଏ. ପାସ୍ କଲାବେଳକୁ ସେ ତାଙ୍କର ଏକ ସନ୍ତାନ ହରାଇବାରୁ ସେଥିରେ ବ୍ୟଥିତ ହୋଇ ଗୋପବନ୍ଧୁ କଲେଜ ଛାଡ଼ିବାକୁ ବିଚାର କରିଥିଲେ । ୧୯୦୩ରେ ମଧୁବାବୁଙ୍କ ଦ୍ୱାରା ଆହୂତ ଉତ୍କଳ ସମ୍ମିଳନୀର ପ୍ରଥମ ବୈଠକରେ ଯୋଗଦାନ କରି ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ପ୍ରସ୍ତାଲୋଚନାରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ୧୯୦୬ରେ ବି. ଏଲ୍. ହେବା ପୂର୍ବରୁ ୧୯୦୪ରେ ଯେତେବେଳେ ସମଗ୍ର ଓଡ଼ିଶା ବନ୍ୟାପ୍ଲାବିତ ହୋଇଥିଲା, ସେତେବେଳେ ଅତି ଦାରୁଣ ଭାବେ 'ଏକର ବିନାଶେ ଅନେକ ପ୍ରକାଶେ' ନୀତିରେ ଗୋପବନ୍ଧୁ ତାଙ୍କର ତୃତୀୟ ପୁତ୍ରକୁ ହରାଇଥିଲେ ଏବଂ ନୀଳଗିରିଠାରେ ବି. ଏଲ୍. କୃତକାର୍ଯ୍ୟ ହେବା ସମ୍ବାଦ ପହଞ୍ଚିବା ଦିନ ହିଁ ତାଙ୍କ ନିକଟରେ ନିଜର ପ୍ରିୟତମା ପତ୍ନୀଙ୍କ ପରଲୋକ ସମ୍ବାଦ ପହଞ୍ଚିଥିଲା । ମାତା, ପିତା ଓ ପତ୍ନୀ ଗୋଟି ଗୋଟି କରି ସମସ୍ତେ ତାଙ୍କୁ ଛାଡ଼ି ଚାଲିଗଲେ । ଏହା ସେହି

ପୁଣ୍ୟାତ୍ମା ପୁରୁଷଙ୍କର ଜୀବନ । ତାଙ୍କର ସେହି ବିଷାଦ ସମୟର ଲିଖିତ ପଂକ୍ତି ହେଉଛି :—

'ମୋ ଜୀବନ–ବୀଣାଯନ୍ତ୍ର–ତାର,' ସ୍ୱରହୀନ ବନ୍ଧୁତମ ଅତି,
ଏବେ ଜମେ ହେଉଛି ଅସାର, ତେଜି ଆଦ୍ୟ ମୋହିନୀ ଶକତି ।'

ସତ୍ୟ ଓ ନ୍ୟାୟ ପରାୟଣ ଆଇନଜୀବୀ ଗୋପବନ୍ଧୁ ଓକିଲାତି କରି ଅସ ପ୍ରସାଦ ଲାଭ କରି ନଥିଲେ । ସେ ଜନତାର ସେବାରେ ଯେଉଁଳି ବିଭୋର ହୋଇ ପଡୁଥିଲେ, ଦେଶର ଯୁବ ସମାଜକୁ ଆଦର୍ଶ ମାର୍ଗରେ ଶିକ୍ଷିତ କରିବା ପାଇଁ ସେହିଭଳି ତତ୍ପର ଥିଲେ । ତେଣୁ ସେ ନୀଳଗିରିରେ ଶିକ୍ଷକତା କରିବା ପାଇଁ ଆଗଭର ହୋଇ ପଡ଼ିଥିଲେ ଏବଂ ପୁରୀରେ ଓକିଲାତି କରୁଥିବାବେଳେ ବାରିପଦା ଯାତ୍ରାର ଅବ୍ୟବହିତ ପୂର୍ବରୁ ୧୯୦୯ ଅଗଷ୍ଟ ୧୨ ତାରିଖରେ ମାତ୍ର ୧୯ ଜଣ ଛାତ୍ରଙ୍କୁ ନେଇ ସତ୍ୟବାଦୀ ମାଧ୍ୟମିକ ସ୍କୁଲ ପ୍ରତିଷ୍ଠା କରିଥିଲେ । ବହୁ ବାଦବିବାଦ ସହ୍ୟ କରି, ଏହି ଅନୁଷ୍ଠାନ ଅଗ୍ରଗତି କରିଥିଲା, କିନ୍ତୁ ସୌଭାଗ୍ୟବଶତଃ ଶ୍ରୀ ରମାବଲ୍ଲଭ ମିଶ୍ର ଜିଲ୍ଲାପାଳ ହୋଇ ଆସିବା ପରେ ତାଙ୍କ ଉଦ୍ୟମରେ ସ୍କୁଲଟି ୧୯୧୪ ନଭେମ୍ବର ମାସରେ କଲିକତା ବିଶ୍ୱବିଦ୍ୟାଳୟ ସହିତ ସଂଯୁକ୍ତ ହୋଇଥିଲା ଏବଂ ତା'ର ତିନି ବର୍ଷ ପରେ ୧୯୧୭ରେ ପାଟନା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବାରୁ ଓଡ଼ିଶାର ଅନ୍ୟାନ୍ୟ ସ୍କୁଲ ସହିତ ଉକ୍ତ ସ୍କୁଲଟି ମଧ୍ୟ ତା'ର ଅଧୀନକୁ ଚାଲି ଯାଇଥିଲା ।

ଶ୍ରୀଯୁକ୍ତ ମଧୁସୂଦନ ଦାସଙ୍କ ପରାମର୍ଶକ୍ରମେ ଗୋପବନ୍ଧୁ ୧୯୧୦ ଜାନୁଆରୀ ମାସରେ ମୟୂରଭଞ୍ଜରେ ସରକାରୀ ଓକିଲ ଭାବେ ନିଯୁକ୍ତି ହେଲେ । ବାସ୍ତବରେ ଗୋପବନ୍ଧୁ ମୟୂରଭଞ୍ଜର ସରକାରୀ କର୍ମକ୍ଷେତ୍ରକୁ ପବିତ୍ର ଓ ପରିମାର୍ଜିତ କରିବାରେ ସାହାଯ୍ୟ କରିଥିଲେ ଏବଂ ତାଙ୍କର ଉପଦେଶକ୍ରମେ ରାଜା ସାହେବ ରାଜ୍ୟରେ ନାନା ରାଜନୈତିକ ସଂସ୍କାର ପ୍ରବର୍ତ୍ତନ କରି ମୟୂରଭଞ୍ଜକୁ ଏକ ଆଦର୍ଶ ରାଜ୍ୟରେ ପରିଣତ କରିବାକୁ ସକ୍ଷମ ହୋଇପାରିଥିଲେ । ଏହା ବ୍ୟତୀତ ପଣ୍ଡିତ ଗୋପବନ୍ଧୁ ସ୍ଥାନୀୟ ସାଧାରଣ ଜୀବନକୁ ମଧ୍ୟ ବିଶେଷ ଭାବେ ପ୍ରଭାବିତ କରିଥିଲେ । ସେ ସେଠାରେ ଏକ 'ଯୁବ ଉତ୍କଳ ସମିତି' ଗଠନ କରି ଯୁବ ସମାଜରେ ଜାତୀୟ ମମତା ଓ ସେବା ମନୋଭାବ ଜନ୍ମାଇଥିଲେ । କିନ୍ତୁ ଫେବୃୟାରୀ ୨୨, ୧୯୧୨ରେ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବଙ୍କ ପରଲୋକ ପରେ ତାଙ୍କ ପୁତ୍ର ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଦେବ ନାବାଳକ ଥିବା କାରଣରୁ ଶାସନ କ୍ଷମତା ୟୁରୋପୀୟମାନଙ୍କ ହାତକୁ ଚାଲିଗଲା ।

ପଣ୍ଡିତ ଗୋପବନ୍ଧୁ ୧୯୧୭ ମସିହାରେ ବିହାର ଓ ଓଡ଼ିଶା ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହେଲେ । ବ୍ୟବସ୍ଥାପକ ହିସାବରେ ତାଙ୍କର ଦ୍ୱିତୀୟ ସମ୍ପାଦନାରେ ପ୍ରତିବନ୍ଧକ ସୃଷ୍ଟି ହେବାର ଆଶଙ୍କା କରି ସେ ଓକିଲାତି କରିବା ଛାଡ଼ି ଦେଇଥିଲେ । ଗୋପବନ୍ଧୁ ୧୯୧୭ରୁ ୧୯୨୦ ପର୍ଯ୍ୟନ୍ତ ବିହାର–ଓଡ଼ିଶା ବିଧାନ ସଭାର ସଦସ୍ୟ ଥିଲେ । ବିଧାନ ସଭା ବୈଠକରେ ଯୋଗ ଦେବା ପୂର୍ବରୁ ସେ ସେଥିପାଇଁ ପୂର୍ଣ୍ଣ ପ୍ରସ୍ତୁତ ହେଉଥିଲେ । ବ୍ୟବସ୍ଥାପକ ହିସାବରେ ଗୋପବନ୍ଧୁ ମୁଖ୍ୟତଃ ଚାରୋଟି ପ୍ରଶ୍ନର ସମାଧାନ ପାଇଁ ଲଢ଼ିଥିଲେ— (୧) ବିଚ୍ଛିନ୍ନାଞ୍ଚଳର ସମ୍ମିଶ୍ରଣ, (୨) ବନ୍ୟା ଦୁର୍ଭିକ୍ଷର ନିରାକରଣ, (୩) ବିନା ଶୁଳ୍କରେ ଲବଣ ଉତ୍ପାଦନ ଓ (୪) ସତ୍ୟବାଦୀ ଢାଞ୍ଚାରେ ଶିକ୍ଷା ସମ୍ପ୍ରସାରଣ। ଏ ସମସ୍ତ କାର୍ଯ୍ୟରେ ଗୋପବନ୍ଧୁ କୃତକାର୍ଯ୍ୟ ହୋଇଥିଲେ ବୋଲି କୁହାଯାଇପାରେ । ସେ ମାନ୍ଦ୍ରାଜ, ମଧ୍ୟପ୍ରଦେଶ ଓ ବିହାରର ବିଭିନ୍ନ ଅଞ୍ଚଳ ପରିଭ୍ରମଣ କରି ଓଡ଼ିଆମାନଙ୍କର ମନରେ ଜାତୀୟ ମମତା ଉତ୍କଳୀୟ ପ୍ରୀତି ଜାଗ୍ରତ କରାଇଥିଲେ । ସୁତରାଂ ୧୯୩୬ର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବା ମୂଳରେ ଗୋପବନ୍ଧୁଙ୍କର ଉଦ୍ୟମ ନିହିତ ଥିବା ଅବିସମ୍ବାଦିତ । ବନ୍ୟା ଦୁର୍ଭିକ୍ଷ ନିରାକରଣ କ୍ଷେତ୍ରରେ ତାଙ୍କ ଉଦ୍ୟମରେ ୧୯୨୮ରେ ଯେଉଁ ବନ୍ୟା କମିଟି ବସିଥିଲା, ତା'ର ଫଳ ପର୍ଯ୍ୟାୟରେ ହିଁ ଭବିଷ୍ୟତରେ ହୀରାକୁଦ ବନ୍ଧ ନିର୍ମାଣ ସମ୍ଭବ ହୋଇଛି । ବିନା ଶୁଳ୍କରେ ଲବଣ ଉତ୍ପାଦନ ପାଇଁ ସେ ଯାହା ଲଢ଼ିଥିଲେ, ୧୯୩୧ରେ ଗାନ୍ଧୀ–ଇର୍‌ୱିନ୍ ଚୁକ୍ତି (Gandhi-Irwin Pact) ସ୍ୱାକ୍ଷରିତ ହେବା ଦ୍ୱାରା ତାହା ଫଳବତୀ ହୋଇଥିଲା । ତାଙ୍କ ଉଦ୍ୟମରେ ରେଭେନ୍ସା କଲେଜରେ ଇଂରାଜୀରେ ଏମ୍.ଏ. ଓ ବି. ଏଲ୍. ଶ୍ରେଣୀ ଖୋଲା ଯାଇଥିଲା ଏବଂ କଟକରେ ଏକ ଇଞ୍ଜିନିୟରିଂ ସ୍କୁଲ ଓ ପୁରୀରେ ଏକ ସଂସ୍କୃତ କଲେଜ ପ୍ରତିଷ୍ଠିତ ହୋଇଥିଲା । ସେପରିକି, ଓଡ଼ିଶାରୁ ପ୍ରତି ବର୍ଷ ଜଣକୁ ଆଇ. ସି. ଏସ୍. ପରୀକ୍ଷାରେ ପ୍ରତିଯୋଗିତା କରିବା ପାଇଁ ଇଂଲଣ୍ଡ ପଠାଯାଉ ବୋଲି ମଧ୍ୟ ସେ ଦାବୀ କରିଥିଲେ । ଏହା ବ୍ୟତୀତ, ଗୋପବନ୍ଧୁ ବହୁ ମାଧ୍ୟମିକ ଭର୍ଣ୍ଣାକୁଲାର ସ୍କୁଲକୁ ମଧ୍ୟ ଇଂରାଜୀ ସ୍କୁଲରେ ପରିଣତ କରାଇଥିଲେ ଏବଂ ପୁରୀ ସହରରେ କଳ ଜଳ ଯୋଗାଣ ପାଇଁ ଲଢ଼ିଥିଲେ । ପୁରୀ ଜିଲ୍ଲା ସ୍କୁଲରେ ଛାତ୍ର ଥିବାବେଳେ, ଏକ 'ପୁରୀ ସେବା ସମିତି' ଗଠନ କରିଥିଲେ । ପୁରୀରେ ଓକିଲାତି କରୁଥିବାବେଳେ ଗୋପବନ୍ଧୁ କୁଷ୍ଠାଶ୍ରମର ସେକ୍ରେଟାରୀ ଭାବେ ସ୍ୱଇଚ୍ଛାରେ କାର୍ଯ୍ୟ ଏବଂ ନିଜେ ଆର୍ଥିକ ସାହାଯ୍ୟ ଦେଇ ଉକ୍ତ ଆଶ୍ରମକୁ ବିକଶିତ କରିବା ଦିଗରେ ଉଦ୍ୟମ କରିଥିଲେ । ସେ ପୁରୀ ମ୍ୟୁନିସିପାଲ୍ କାଉନ୍‌ସିଲ୍‌ର ସଭ୍ୟ ଭାବେ ମନୋନୀତ ହୋଇଥିଲେ ଏବଂ ସାକ୍ଷୀଗୋପାଳ ମନ୍ଦିରର ଟ୍ରଷ୍ଟି ପଦରେ ମଧ୍ୟ ନିଯୁକ୍ତ ହୋଇଥିଲେ । ଗୋଟିଏ ବ୍ୟାୟାମଶାଳା ପ୍ରତିଷ୍ଠା କରି ସେ ଯୁବ ସମାଜର ସ୍ୱାସ୍ଥ୍ୟ ସଙ୍ଗଠନ ଦିଗରେ ମଧ୍ୟ ପ୍ରୟାସ କରିଥିଲେ । ଅଛୁଆଁ ଭେଦଭାବ ଦୂର କରିବା ପାଇଁ ଏକ ଆଶ୍ରମ ଗଠନ କରିଥିଲେ, ଯାହାର ନାମ ରଖିଥିଲେ 'ବାପୁଜୀ ଆଶ୍ରମ' । ବିଧବାମାନଙ୍କ ଉତ୍ଥାନ ପାଇଁ ଏକ ଆଶ୍ରମ ମଧ୍ୟ ପ୍ରତିଷ୍ଠା କରିଥିଲେ, ଯାହାର ନାମ ଥିଲା 'ଜଗନ୍ନାଥ ଉଇଡୋ ଆଶ୍ରମ' ଏବଂ ବିଧବାମାନଙ୍କୁ କାମଧନ୍ଦା ଯୋଗାଇ ଦେଇଥିଲେ । ଏଥିରେ ବହୁ ବଙ୍ଗାଳୀ ବିଧବା ମଧ୍ୟ ଯୋଗ ଦେଇଥିଲେ । 'କର୍ତ୍ତବ୍ୟ ବୋଧିନୀ ସମିତି' ମଧ୍ୟ ଗୋପବନ୍ଧୁଙ୍କ ଉଦ୍ୟମରେ ସୃଷ୍ଟି ହୋଇଥିଲା, ଯାହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା, ସାମାଜିକ, ଅର୍ଥନୀତି ଏବଂ ରାଜନୀତି ସମସ୍ୟା ସମାଧାନ କରିବା । ଏହିପରି ଅନେକ ଅନୁଷ୍ଠାନ ପ୍ରତିଷ୍ଠା କରି ସେ ଅମରତ୍ୱ ଲାଭ କରିଛନ୍ତି ।

୧୯୦୩ ରୁ ୧୯୨୮ ପର୍ଯ୍ୟନ୍ତ କଂଗ୍ରେସର ଅସହଯୋଗ ଆନ୍ଦୋଳନରେ ପୂର୍ଣ୍ଣ ପ୍ରାଣରେ ଯୋଗ ଦେବାଯାଏ ଉତ୍କଳ ସମ୍ମିଳନୀ ଥିଲା ନିଃସ୍ୱାର୍ଥ, ନିରାଡ଼ମ୍ବର ଓ ଉଦାର ଜାତୀୟ ଭାବାପନ୍ନ ଗୋପବନ୍ଧୁଙ୍କର ପ୍ରାଣପ୍ରିୟ ଜୀବନର ପ୍ରଶସ୍ତ କର୍ମକ୍ଷେତ୍ର ଓ ଦେଶ ସେବାର ପ୍ରକୃଷ୍ଟ ମାଧ୍ୟମ । ଗୋପବନ୍ଧୁଙ୍କ ପ୍ରତି ଉତ୍କଳ ସମ୍ମିଳନୀ

ଯେଉଁଠି ଗୋଟିଏ ଜାତୀୟ ମିଳନ ମଣ୍ଡପ ନଥିଲା, ତାଙ୍କ ପ୍ରତି ଏ ସମ୍ମିଳନୀ ଥିଲା ମହାଭାରତୀୟ ଭାବର ଅଦମ୍ୟ ପ୍ରେରଣାର ଅନୁଗତ ଭକ୍ତ । ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନରେ ସେ ଯେଉଁ ଅଭିଭାଷଣମାନ ଦେଇଛନ୍ତି, କିମ୍ବା ଉତ୍କଳ ସମ୍ମିଳନୀର କାର୍ଯ୍ୟକଳାପ ଓ ଭବିଷ୍ୟତ ସମ୍ବନ୍ଧରେ ନିଜର ମନ୍ତବ୍ୟ ଏବଂ ସୁଚିନ୍ତିତ ଯୋଜନା ଉପସ୍ଥାପିତ କରିଛନ୍ତି, ସେଥିରୁ କେବଳ ତାଙ୍କର ଲୋକ ସେବା କିମ୍ବା ଦେଶହିତୈଷିଣୀର ପରିଚୟ ମିଳେ ନାହିଁ, ମିଳେ ତାଙ୍କର କବିଜନ ସୁଲଭ ଭାବାବେଗ, ଦେଶ ଓ ଦଶ ପାଇଁ ପ୍ରାଣର ଗଭୀର କ୍ରନ୍ଦନ, ସୁଗଭୀର ଆଦର୍ଶ ନିଷ୍ଠା, ଅଚଳ ଅଟଳ ଧର୍ମବୋଧ ଏବଂ ତାଙ୍କର ଅପୂର୍ବ ଲିଖନ ଶୈଳୀ ଓ ଅଦ୍ୱିତୀୟ ଜାତିପ୍ରୀତି । ଏଗୁଡ଼ିକର ସାହିତ୍ୟିକ ମୂଲ୍ୟ ଚିରନ୍ତନ, ଯୁଗ ଯୁଗ ଧରି ଆମମାନଙ୍କୁ ତାହା ଉଦାତ୍ତ ମାନବିକତାର ଉଦ୍‌ବୁଦ୍ଧ କରୁଥିବ । ଏଗୁଡ଼ିକ 'ଗୋପବନ୍ଧୁ–ଉପନିଷଦ'ର ମର୍ମବାଣୀ ।

ପଣ୍ଡିତ ଗୋପବନ୍ଧୁ ମହାତ୍ମା ଗାନ୍ଧୀଙ୍କ ଆରବ୍ଧ ଅସହଯୋଗ ଆନ୍ଦୋଳନରେ ପୂର୍ଣ୍ଣ ପ୍ରାଣରେ ସହଯୋଗ କରି ଉତ୍କଳୀୟ ଜନତାଙ୍କୁ ସ୍ୱାଧୀନତା ସଂଗ୍ରାମ ପଥରେ ପରିଚାଳିତ କରିବା କାରଣରୁ ତାଙ୍କ ଉପରେ ୧୪୪ ଧାରା ଜାରି କରାଯାଇଥିଲା ଏବଂ ସେ ତାହା ଅମାନ୍ୟ କରି ଦେଶ ମାତୃକାର ସେବାରେ ଅଟଳ ରହିବାରୁ ତାଙ୍କୁ କାରାକକ୍ଷରେ ନିକ୍ଷେପ କରାଯାଇଥିଲା । ତଥାପି ବନ୍ଦୀଶାଳାର ପ୍ରସ୍ତର ପ୍ରାଚୀର ଓ ଲୌହଦଣ୍ଡ ମଧ୍ୟରେ ରହିବାକୁ ସେ ବିଧାତାର ଆଶୀର୍ବାଦ ରୂପେ ଗ୍ରହଣ କରିଥିଲେ ଏବଂ ସୁଦୂର ହଜାରିବାଗ ଜେଲରୁ 'କାରା କବିତା' ଓ 'ବନ୍ଦୀର ଆତ୍ମ କଥା' ମଧ୍ୟରେ ସ୍ୱାଧୀନତା ସଂଗ୍ରାମର ଶାନ୍ତି ସେନାଙ୍କୁ ଅମର ଉଦ୍‌ବୋଧନ ବାଣୀ ଶୁଣାଇଥିଲେ—

ଥିଲେ ଯହିଁ ତହିଁ ଭାରତ ବକ୍ଷରେ,
ମରି କି ମୁଁ ଅଛି ଆପଣା କକ୍ଷରେ ।
ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ,
ପ୍ରତି ସ୍ଥାନ ମୋର ପ୍ରିୟ ପୁରୀ ଧାମ ।
XX XX XX XX
କର୍ମଭୂମେ କିଏ ନେତା ଅବାନ୍ତର,
ସକଳେ ନିମିତ୍ତ ବିଧି ନିୟୋଜିତ ।

ଦୀର୍ଘ ଦୁଇ ବର୍ଷ ବନ୍ଦୀ ଜୀବନର ଅବସାନ ପରେ ୧୯୨୪ ମସିହା ଜୁନ୍ ମାସରେ ଗୋପବନ୍ଧୁ କଟକରେ ପଦାର୍ପଣ କରିବା ସଙ୍ଗେ ସଙ୍ଗେ ବିଶିଷ୍ଟ ଦେଶପ୍ରେମୀ ବୈଜ୍ଞାନିକ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ସଭାପତିତ୍ୱରେ ଅନୁଷ୍ଠିତ ପ୍ରାଦେଶିକ ରାଜନୈତିକ ସମ୍ମିଳନୀରେ ଯୋଗଦାନ କରିବାକୁ ଯାଇଥିଲେ ଏବଂ ସଭାପତି ମହୋଦୟ ତାଙ୍କୁ 'ଉତ୍କଳମଣି' ନାମରେ ସମ୍ବୋଧିତ କରି ସଭା ମଣ୍ଡପକୁ ସ୍ୱାଗତ କରାଇଥିଲେ । ଆଜି ଗୋପବନ୍ଧୁ ନାହାନ୍ତି କିମ୍ବା ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ନାହାନ୍ତି; କିନ୍ତୁ ସେହି ଉତ୍କଳମଣି ନାମଟି ଅମର ରହିଯାଇଛି ଏବଂ ଯେତେବେଳେ ଆଜି ଏ ଦେଶବାସୀ ବନ୍ୟା, ଦୁର୍ଭିକ୍ଷ, ଅନ୍ନାଭାବ ଏବଂ ମହାମାରୀ ପ୍ରାଦୁର୍ଭାବରେ କ୍ଲିଷ୍ଟମାନ ହୋଇପଡୁଛନ୍ତି, ତାଙ୍କ ଆଖି ଆଗରେ ନାଚି ଯାଉଛି ୧୯୨୦ର ଦୁର୍ଭିକ୍ଷ ଓ ୧୯୨୫, ୧୯୨୬, ୧୯୨୭ର ବନ୍ୟା ପ୍ରପୀଡ଼ିତ ଜନତାର ସେବାରତ ପଣ୍ଡିତ ଗୋପବନ୍ଧୁଙ୍କର ଶାନ୍ତ, ସୌମ୍ୟ ମୂର୍ତ୍ତି ।

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିର ସାମ୍ବାଦିକ ଯୁଗ ବିଷାଦ ଲୋକଙ୍କ ପୂରିତ ଉତ୍କଳର ଜନ ସମାଜର ଅଭାବ, ଅସୁବିଧା ଓ ଅସନ୍ତୋଷର ପ୍ରତିପ୍ରକାଶ ଲାଗି ଓଡ଼ିଶାରେ ଗୋଟିଏ ଉପଯୁକ୍ତ ପତ୍ରିକା ନଥିଲା । ପଣ୍ଡିତ ଗୋପବନ୍ଧୁଙ୍କ ଆପ୍ରାଣ ଉଦ୍ୟମରେ ୧୯୧୯ ଅକ୍ଟୋବର ୪ ତାରିଖ ଶନିବାର ଦଶହରା ଦିନ ସାପ୍ତାହିକ 'ସମାଜ' ପ୍ରକାଶ ପାଇଲା ତତ୍‌କାଳୀନ ସାମାଜିକ ଜୀବନର ଆଶା, ନିରାଶା, ଅଭାବ, ଅସୁବିଧାର ସମ୍ବାଦ ଓ ସଙ୍କେତ ବହନ କରି । ଏହାପରେ ୧୯୨୪ରେ 'ସମାଜ' ଅଫିସ୍ ସାକ୍ଷୀଗୋପାଳରୁ ପୁରୀକୁ ଉଠାଇ ନିଆଯାଇଥିଲା ଏବଂ ୧୯୨୭ରେ ପ୍ରଚାରର ସୁବିଧା ଦୃଷ୍ଟିରୁ ତାହା କଟକକୁ ଅଣାଯାଇଥିଲା । ଉନ୍ନତି ପଥରେ ଅଗ୍ରସର ହୋଇ କ୍ରମେ 'ସମାଜ' ୧୯୩୦ ମସିହାରୁ ଦୈନିକ ପତ୍ରିକାରେ ପରିଣତ ହେଲା ଏବଂ ୧୯୩୦ ବେଳକୁ କେତେଦିନ ପାଇଁ ପ୍ରତ୍ୟେକ ଦୁଇଟି ସଂସ୍କରଣ ମଧ୍ୟ ପ୍ରକାଶ ପାଇଲା ।

ପର ଦୁଃଖ କାତର ଗୋପବନ୍ଧୁ ନିଜ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ନଦେଇ ଲୋକ ସେବକ ସମାଜର ନିଷ୍ଠାପର ସଭ୍ୟ ଭାବରେ ଜନ ସେବାରେ ଗୁଢ଼ ମନୋନିବେଶ କରିବା ଫଳରେ ୧୯୨୮ ମସିହା ଏପ୍ରିଲ୍ ମାସରେ ଲାହୋର ଯାତ୍ରା କରିବା ସମୟରୁ ତାଙ୍କର ସ୍ୱାସ୍ଥ୍ୟଭଙ୍ଗ ଘଟିବା ଆରମ୍ଭ ହେଲା ଏବଂ କ୍ରମେ ତାହା ଗୁରୁତର ହୋଇ ଜୁନ୍ ୧୭ ତାରିଖ ବେଳକୁ ଅବସ୍ଥା ଚରମ ସୀମା ସ୍ପର୍ଶ କଲା । ତା'ର ବାର୍ତ୍ତା ପାଇ ଶ୍ରୀଯୁକ୍ତ ରାଧାନାଥ ରଥ, ଅଧ୍ୟାପକ ଉଦାକର ପତି, ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଲିଙ୍ଗରାଜ ମିଶ୍ର ପ୍ରମୁଖ ବନ୍ଧୁ ବର୍ଗ ଓ ସହକର୍ମୀ ସତ୍ୟବାଦୀଠାରେ ପହଞ୍ଚିଲା ପରେ ଇଚ୍ଛାପତ୍ର (Will) ସ୍ୱାକ୍ଷରିତ ହେବାରୁ ମାତ୍ର ଦୁଇ ଘଣ୍ଟା ମଧ୍ୟରେ ତା ୧୭–୬–୧୯୨୮ ରିଖ ରବିବାର ସନ୍ଧ୍ୟା ୭/୨୭ ମିନିଟ୍ ସମୟରେ ସେ ଇହଧାମ ତ୍ୟାଗ କରି ଚାଲିଗଲେ ।

ଅର୍ଦ୍ଧଶତ ବର୍ଷ ବୟସରେ ସେହି ପୁଣ୍ୟାତ୍ମା ପୁରୁଷଙ୍କର ଶରୀରାବସାନ ଘଟିଥିଲା ସତ, ମାତ୍ର ସତ୍ୟ, ନ୍ୟାୟ ଓ ଶାନ୍ତିର ଉପାସକ ଗୋପବନ୍ଧୁ ଜୀବନର ଶେଷ ସାତ ବର୍ଷ ଜନତା ଜନାର୍ଦ୍ଦନର ସେବାରେ ଆତ୍ମୋତ୍ସର୍ଗ କରି ନିଜର 'ଉତ୍କଳମଣି' ନାମକୁ ସାର୍ଥକ କରିବା ସଙ୍ଗେ ସଙ୍ଗେ ଜାତୀୟ ଇତିହାସ ପୃଷ୍ଠାରେ ଏକ ଅମର ଅଧ୍ୟାୟ ରଚନା କରିଛନ୍ତି । ଏକ ପକ୍ଷରେ ବନ୍ୟା, ଦୁର୍ଭିକ୍ଷ, ମଡ଼କ ଓ ଦୁର୍ବିପାକ ପ୍ରପୀଡ଼ିତ ଜନତାର ସେବା କରି ଓ ଅନ୍ୟ ପକ୍ଷରେ, ଭାରତର ସ୍ୱାଧୀନତା ସଂଗ୍ରାମର ବିଜୟ ହାସଲ କରିବା ଉଦ୍ଦେଶ୍ୟରେ ଉତ୍କଳୀୟ ଜନତାଙ୍କୁ ସ୍ୱାର୍ଥ ତ୍ୟାଗ ପୂର୍ବକ ଜାତୀୟ ଲକ୍ଷ୍ୟ ସାଧନ ପଥରେ ଆଗୁଆନ୍ ହେବା ପାଇଁ ବହୁ ଗମ୍ଭୀର ଉଦ୍‌ବୋଧନ ବାଣୀ ଶୁଣାଇ କର୍ମବୀର, ଧର୍ମବୀର, ନ୍ୟାୟବୀର ଓ ତ୍ୟାଗବୀର ଗୋପବନ୍ଧୁ ଏକ ମହାଜାତୀୟ ଦାନର ଅଭୂତପୂର୍ବ ଉଦାହରଣ ଦେଇଛନ୍ତି । ବର୍ତ୍ତମାନ ପରିସ୍ଥିତିରେ ସେଇ ପୁଣ୍ୟାତ୍ମା, ନିଷ୍ଠାପର ସାଧକ, ମହାନ୍ ଦେଶ ସେବକ, ଦେଶପ୍ରେମୀ ଗୋପବନ୍ଧୁଙ୍କର ବାଣୀ ସବୁରି ମନପ୍ରାଣକୁ ମାନବିକତାର ମନ୍ତ୍ରରେ ଉଦ୍‌ବୁଦ୍ଧ କରୁ, ଏତିକି ମାତ୍ର କାମନା ।

ଅଧ୍ୟାପକ, ଇତିହାସ ବିଭାଗ,
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ,
କାଇପଦର, ଖୋର୍ଦ୍ଧା ।

# ଦଶପଲ୍ଲାର କନ୍ଧମେଳି

**✻ ଜୟଶଙ୍କର ନାୟକ ✻**

ଦଶପଲ୍ଲାର କନ୍ଧମେଳି ପ୍ରକୃତରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ଉଦ୍ଦିଷ୍ଟ ନଥିଲା । ଏହା କେବଳ ଥିଲା ଅତ୍ୟାଚାରୀ ଭାବଗ୍ରାହୀ ବିଶ୍ୱାଳ ବିରୁଦ୍ଧରେ ମାତ୍ର ଇଂରେଜ ସରକାର ଭାବଗ୍ରାହୀ ବିଶ୍ୱାଳଙ୍କୁ ସାହାଯ୍ୟ କଲା । ଇଂରେଜ ହାକିମମାନେ ମଧ୍ୟ ସେହି ଅତ୍ୟାଚାରୀମାନଙ୍କୁ ସାହାଯ୍ୟ କରି ସେମାନଙ୍କ ପରାମର୍ଶରେ ନିରୀହ ଲୋକମାନଙ୍କୁ ଦଣ୍ଡ ବିଧାନ କଲେ । ତଥାପି ଦଶପଲ୍ଲାର କନ୍ଧମାନଙ୍କର ସାହାସ, ତ୍ୟାଗ ଓ ଦେଶପ୍ରାଣ ସମ୍ପର୍କରେ ଅନୁଧ୍ୟାନ କଲେ ଆଜି ପ୍ରତ୍ୟେକଙ୍କ ମନରେ ଉନ୍ମାଦନା ଜାଗ୍ରତ କରାଏ ।

ଦଶପଲ୍ଲାର ବୃଦ୍ଧ ରାଜାଙ୍କ ବିୟୋଗ ପରେ କିଶୋରଚନ୍ଦ୍ର ଭଞ୍ଜଦେଓ ହେଲେ ରାଜା । ସେ କିନ୍ତୁ ଅଜ୍ଞାନ ବାଳକ । ଭାବଗ୍ରାହୀ ବିଶ୍ୱାଳ ହେଲେ ରାଜ୍ୟର ସର୍ବମୟ କର୍ତ୍ତା । ରାଜଭଣ୍ଡାର ଉପରେ ତାଙ୍କର ଲୋଲୁପ ଦୃଷ୍ଟି ପଡ଼ିଲା ରାଜକୋଷ କ୍ରମେ ଭାବଗ୍ରାହୀ ବିଶ୍ୱାଳ ଦ୍ୱାରା ଶୂନ୍ୟ ହେବାକୁ ଲାଗିଲା । ଦଶପଲ୍ଲାର ପ୍ରଚଳିତ ପ୍ରଥା ହେଉଛି ଯେ ରାଜା ନିଃସନ୍ତାନ ଥିଲେ ତାଙ୍କର ନିକଟ ସମ୍ପର୍କୀୟ କେହି ବଂଶଧର ରାଜଗାଦି ଆରୋହଣ କରିବେ ମାତ୍ର ରାଜା ପୋଷ୍ୟପୁତ୍ର ଗ୍ରହଣ କରି ପାରିବେ ନାହିଁ । ଏହି ଦୃଷ୍ଟିରୁ ଦଶପଲ୍ଲା ରାଜାଙ୍କର ପୁତ୍ର ନ ଥିବାରୁ ତାଙ୍କର ଦାଦାପୁଅ ଭାଇ ବୈଷ୍ଣବଚରଣ ଦେଓ ରାଜା ହେବା କଥା ମାତ୍ର ରାଜା ପୋଷ୍ୟପୁତ୍ର ଗ୍ରହଣ କଲେ । ଫଳରେ ବୈଷ୍ଣବଚରଣ ଦେଓ ରାଜ ସିଂହାସନରୁ ବଞ୍ଚିତ ହେଲେ । ଅଥଚ କନ୍ଧମାନଙ୍କର ଦଶପଲ୍ଲା ରାଜ୍ୟପ୍ରତି ପ୍ରଗାଢ଼ ଅନୁରକ୍ତି । ସେମାନେ ମଧ୍ୟ ପୋଷ୍ୟପୁତ୍ର ଗ୍ରହଣକୁ ସମ୍ମତି ଦେଲେ ନାହିଁ । ସେମାନେ ବୈଷ୍ଣବ ଦେବଙ୍କ ସହିତ ପଲିଟିକାଲ ଏଜେଣ୍ଟଙ୍କ ନିକଟରେ ଆପତ୍ତି ଜଣାଇଲେ । ରାମସେ ସାହେବଙ୍କ ଗୁଲବାଜି ଦ୍ୱାରା ବୈଷ୍ଣବ ଦେଓ ରାଜ୍ୟରୁ ବିତାଡ଼ିତ ହେଲେ । ସେ ଏହି ସୁଯୋଗରେ ରାଜକୋଷରୁ ବହୁ ଅମୂଲ୍ୟ ପଦାର୍ଥ ନେଇଗଲେ । ତେଣୁ ବୈଷ୍ଣବ ଦେଓ ରାଜ୍ୟରୁ ବିତାଡ଼ିତ ହୋଇ କଟକରେ ମକଦ୍ଦମା କଲେ । ଦଶପଲ୍ଲା ଗଡ଼ରେ ମେଳି ଆରମ୍ଭ ହେଲା । ଏହି ଘଟଣା କନ୍ଧମାନଙ୍କ ମଧ୍ୟରେ ଉତ୍ତେଜନା ସୃଷ୍ଟି କଲା ।

ସେତେବେଳେ ଓଡ଼ିଶା ଘୋର ଅନ୍ଧକାରରେ ବୁଡ଼ି ରହିଥାଏ । ଦେଶରେ ରାଜନୈତିକ ଚେତନା ଟାଣି ଉଠି ନଥାଏ । ଓଡ଼ିଶାରେ ମଧ୍ୟ ରାଜନୈତିକ ଜାଗିଜ ନଥାଏ । ଭାବଗ୍ରାହୀ ବିଶ୍ୱାଳ ମଧ୍ୟ ଦଶପଲ୍ଲାର ସୁପରିଣ୍ଟେଣ୍ଡେଣ୍ଟ ପଦରେ ନିଯୁକ୍ତ ହୋଇଥାନ୍ତି । ତେଣୁ ଦଶପଲ୍ଲାର ରାଜା, ରାଜ ପରିବାର ଓ ପ୍ରଜାକୁଳ ଅସହାୟ ନିରାଶ୍ରୟ । ସମସ୍ତେ ବିଶ୍ୱାଳଙ୍କର ଦୟାର ପାତ୍ର । ସେ ଯଥା ରାଜ ଅନ୍ତଃପୁରରେ ପ୍ରବେଶ କରିବାକୁ ଲାଳାୟିତ । ସେ ଥିଲେ ଅତ୍ୟନ୍ତ ଅତ୍ୟାଚାରି । ଦଶପଲ୍ଲାର ଲୋକେ ଭୀତତ୍ରସ୍ତ । ବୈଷ୍ଣବ ଦେଓ ମଧ୍ୟ ବିତାଡ଼ିତ ହୋଇ କଟକରେ ଅବସ୍ଥାନ କରୁଥିଲେ । କେତେ ଜଣ କନ୍ଧ ଆସି ତାଙ୍କୁ ବିଶ୍ୱାଳବାବୁଙ୍କ ଅତ୍ୟାଚାର ବିଷୟରେ କହୁଥାନ୍ତି । ସେମାନେ କ'ଣ କରିବେବୋଲି ବାରମ୍ବାର ପଚାରୁଥାନ୍ତି । ପରିଶେଷରେ କନ୍ଧମାନଙ୍କୁ ବିଶ୍ୱାଳ ବିରୁଦ୍ଧରେ ବିଦ୍ରୋହ କରିବାକୁ ପ୍ରେରଣା ଦେଲେ । ତା'ପରେ କନ୍ଧମାନେ ପ୍ରତିଜ୍ଞା କରି ଫେରିଗଲେ ଦଶପଲ୍ଲାକୁ । ସେମାନେ ଭାବଗ୍ରାହୀ ବିଶ୍ୱାଳକୁ ଜୀବନରେ ମାରିଦେବା ପାଇଁ ସ୍ଥିର କଲେ ।

ସେତେବେଳକୁ ପ୍ରଥମ ବିଶ୍ୱ ଯୁଦ୍ଧ ଆରମ୍ଭ ହୋଇ ଯାଇଥାଏ । ସେହି ସମୟରେ କନ୍ଧମାନେ ଦଶପଲ୍ଲାର "ହରଦିଗୋଲ" ନାମକ ସ୍ଥାନରେ ଭାବଗ୍ରାହୀ ବିଶ୍ୱାଳର ମୁଣ୍ଡକାଟି ଦେବାକୁ ସ୍ଥିର କଲେ । ଭାବଗ୍ରାହୀ ବିଶ୍ୱାଳ ଏ ସମ୍ବାଦ ପାଇ କନ୍ଧମାନଙ୍କୁ ହାତ କରିବାକୁ ଲାଗିଲେ । ମାତ୍ର ତାଙ୍କର କୌଶଳ ବ୍ୟର୍ଥ ହୋଇଗଲା । କନ୍ଧମାନେ ମେଳି ହୋଇ ବିଶ୍ୱାଳଙ୍କର ବିଶ୍ୱସ୍ତ କର୍ମଚାରୀଙ୍କୁ ମାରିଦେଲେ । ଧନୁଶର ଓ ଅନ୍ୟାନ୍ୟ ହତିଆର ଧରି ସେମାନେ ଗଡ଼ ଆକ୍ରମଣ କଲେ । ଭାବଗ୍ରାହୀ ବିଶ୍ୱାଳ ଉପରେ ନିଜ ସ୍ତ୍ରୀ ଓ ପିଲାଛୁଆଙ୍କୁ ନେଇ ରାଜବାଟିକୁ ପଳାଇ ଗଲେ । କନ୍ଧମାନେ ରାଜ ଉଆସକୁ ଘେରାଉ କରି ଜଗିରହିଲେ । ରାଜାଙ୍କୁ ସିଏ ଆସିବା କରିବା ପାଇଁ ଛାଡ଼ିଲେ ନାହିଁ । ଗଡ଼ର କିଛି ଦୂରରେ ଗୋଟିଏ ଆମ୍ବ ତୋଟାରେ ଡେରା ପକାଇ ରହିଲେ । ସେମାନେ ଜେଲଖାନା ଭାଙ୍ଗି କଏଦୀମାନଙ୍କୁ ମୁକ୍ତ କରିଦେଲେ । ସେଠୁ ସାହେବ ରାମସେଙ୍କ ନିକଟରେ କନ୍ଧମାନେ ଭାବଗ୍ରାହୀ ବିଶ୍ୱାଳଙ୍କ ବିରୁଦ୍ଧରେ ଅଭିଯୋଗ କଲେ ମାତ୍ର ସାହେବ ରାଜଗୋପୁ ପଳାଇଯାଇ ଗୁପ୍ତରେ ନୟାଗଡ଼ ସୁପରିଣ୍ଟେଣ୍ଡେଣ୍ଟଙ୍କ ନିକଟକୁ ସମ୍ବାଦ ପଠାଇଲେ । ଏଣେ କନ୍ଧମାନେ ଅନେକ ପୋଲିସ ସବ୍-ଇନିସ୍ପେକ୍ଟରଙ୍କୁ ହତ୍ୟା କଲେ । ଆହୁରି କେତେ ଜଣ ରାଜକର୍ମଚାରୀଙ୍କୁ ମଧ୍ୟ ହତ୍ୟା କଲେ । ସେମାନେ ଗଡ଼ ପାଖରେ ଯାଇ ଅପେକ୍ଷା କରିଥାନ୍ତି । ସେମାନଙ୍କର ଧାରଣା ପୁଲିସ ଓ ସାହେବ ଆସି ସେମାନଙ୍କର ଗୁହାରି ଶୁଣିବେ । କିନ୍ତୁ ସାହେବ ଆସିଲେ ନାହିଁ । କନ୍ଧମାନେ ଅଧୈର୍ଯ୍ୟ ହୋଇଉଠିଲେ । ହଠାତ ଦିନେ ସାହେବ ବନ୍ଧୁକ ଚଳାଇ ଗୁଳି ଚାଳି ଜଣ କନ୍ଧଙ୍କୁ ମାରି

ହେଲେ । ଏ ଘଟଣା ଜାଣି ପାରି କନ୍ଧମାନେ ଉତ୍ତ୍ୟକ୍ତ ହୋଇ ପଡ଼ିଲେ । ସେମାନେ ଉଆସ ମଧ୍ୟରେ ପଶି ବିଶ୍ୱାଳଙ୍କୁ ଧରିଆଣି ଫାଶି ଦେବା ପାଇଁ ଶପଥ କଲେ । ତଥାପି କନ୍ଧମାନେ ରାଜଉଆସକୁ ପ୍ରବେଶ କରି ପଲଟିକାଲ ଏଜେଣ୍ଟ ସାହେବଙ୍କୁ ସାକ୍ଷାତ କରିବାକୁ ଚାହିଁଲେ ମାତ୍ର ସାକ୍ଷାତ ନ ହେବାରୁ ସେମାନେ ରାଜପ୍ରାସାଦର ପ୍ରାଚୀରରେ ନିଆଁ ଲଗାଇ ପ୍ରାଚୀର ଭାଙ୍ଗିବାକୁ ଲାଗିଲେ । ଏହି ଅବସରରେ କଟକରୁ ହଜାର ହଜାର ସଶସ୍ତ୍ର ପୋଲିସ୍ ବାହିନୀ ଗୁର୍ଖା ସୈନ୍ୟ ଉପସ୍ଥିତ ହୋଇ କନ୍ଧମାନଙ୍କୁ ନୃଶଂସ ଭାବରେ ଗୁଳି ଚଳାଇ ମାରିଦେଲେ । କନ୍ଧମେଳିକୁ ଇଂରେଜ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା ବୋଲି ପ୍ରଚାର କରାଗଲା । ତାପରେ ରାମ୍ସେ ସାହେବ ହେଲେ ଓଡ଼ିଶା ଗଡ଼ଜାତ ରାଜ୍ୟମାନଙ୍କର ସାମ୍ରାଜ୍ୟ ବିହୀନ ସମ୍ରାଟ । ସେ ରାଜାମାନଙ୍କଠାରୁ ତଥା ଦେୱାନମାନଙ୍କଠାରୁ ପ୍ରଚୁର ଅର୍ଥ ଉପାର୍ଜନ କରୁଥିଲେ । ନିରୀହ କନ୍ଧମାନଙ୍କର ଆପତ୍ତି ନଶୁଣି ଯେପରି ରାଜଦ୍ରୋହୀ ବିଶ୍ୱାଳ ବୁଝିରେ ଇଂରେଜ ସରକାରଙ୍କ ପ୍ରତିନିଧି ରାମସେ ସାହେବ ଅତି ନିର୍ମମ ନିଷ୍ଠୁର ଭାବରେ ସେମାନଙ୍କୁ ହତ୍ୟା କଲେ ତାହା ଇତିହାସରେ କଳଙ୍କମୟ ହୋଇ ରହିଲା । ବହୁ କନ୍ଧଙ୍କୁ ହତ୍ୟା କରାଗଲା । ଅନେକଙ୍କୁ କାରାବାସ ଭୋଗିବାକୁ ପଡ଼ିଲା । ବହୁ କନ୍ଧଙ୍କର ସମ୍ପତ୍ତି ବାଜ୍ୟାପ୍ତ କରାଗଲା ।

ଦଶପଲ୍ଲାର ଗାନ୍ଧୀବାଦୀ ନେତା ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କୁ ମଧ୍ୟ ସେହି ମେଳି ସହିତ ସମ୍ପୃକ୍ତ କରାଇ ଦିଆଗଲା । ଫଳରେ ସେମାନେ ଦଶପଲ୍ଲାର ଅଷାରୀ ଶାସନ ତଥା ମୃତ ଅତ୍ୟାଚାର ନିର୍ମମ ଦମନଲୀଳା ବିଷୟରେ କଟକ ଆସି ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ଅବହିତ କରାଇଲେ । ସେଠାରୁ କୌଣସି ଆଶା ଭରସା ନ ପାଇ ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ ନେତୃତ୍ୱରେ କଲିକତା ଗଲେ । ସେଠାରେ ବିଶ୍ୱକବି ରବୀନ୍ଦ୍ର ନାଥ ଠାକୁରଙ୍କଠାରୁ ଆରମ୍ଭ କରି ସି: ଏଫ୍: ଆଣ୍ଡ୍ରୁଜ ପର୍ଯ୍ୟନ୍ତ ସମସ୍ତଙ୍କୁ ସାକ୍ଷାତ କରି ଦଶପଲ୍ଲାର ଦୁର୍ଦ୍ଦଶା ସମ୍ପର୍କରେ ଅବହିତ କରାଇଲେ ।

ବାସ୍ତବିକ ଏହିପରି ଭାବରେ ଇଂରେଜ ସୈନ୍ୟମାନେ ଗାଁ, ଗାଁ, ଘରେ ଘରେ ପଶି ଦମନଲୀଳା ଚଳାଇଥିଲେ । ଅନେକ ଗାଁ ଲୁଟ୍ତରାଜ ଓ ଅଗ୍ନିସଂଯୋଗ କରି ଧ୍ୱଂସ କରି ଦେଇଥିଲେ । ଅନେକ ସ୍ତ୍ରୀ ଓ ଯୁବତୀମାନଙ୍କୁ ଧର୍ଷଣ କରି ହତ୍ୟା କରିଦେଇ ଥିଲେ । ବିଦ୍ରୋହୀ କନ୍ଧମାନଙ୍କୁ ରାସ୍ତା ନିକଟରେ ଥିବା ବୃକ୍ଷମାନଙ୍କରେ ଫାଶୀ ଦେଇ ଝୁଲାଇ ରଖୁଥିଲେ । ବାସ୍ତବରେ ଏ ଲୋମହର୍ଷଣକାରୀ ଦୃଶ୍ୟ ଏ ଜଗତରେ ମଧ୍ୟ ବିରଳ ଥିଲା ।

---

ଗ୍ରାମ/ ପୋ:ଅ:-ଖୁଣ୍ଟ,
ମୟୂରଭଞ୍ଜ ।



ସଚିବାଳୟଠାରେ ଅନୁଷ୍ଠିତ ରାଜ୍ୟସ୍ତରୀୟ ପ୍ରାକୃତିକ ବିପର୍ଯ୍ୟୟ କମିଟିରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ବର୍ତ୍ତମାନ ଦେଖାଦେଇଥିବା ବନ୍ୟା ପରିସ୍ଥିତିର ସମୀକ୍ଷା କରିବା ସଙ୍ଗେ ସଙ୍ଗେ ରିଲିଫ୍ କାର୍ଯ୍ୟକ୍ରମ ଉପରେ ଆଲୋଚନା କରୁଛନ୍ତି ।

# ନାରୀ ସାକ୍ଷରତା : ପ୍ରଗତିର ଗୁବିକାଠି

* ସୁରେନ୍ଦ୍ରନାଥ ପଣ୍ଡା *

ଶିକ୍ଷା ଓ ସଂସ୍କୃତି ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଯେଉଁ ବ୍ୟକ୍ତି ଯେତେ ଶିକ୍ଷିତ, ତାହାର ସଂସ୍କୃତି ସେତେ ଉନ୍ନତ । ଜୀବନରେ କେତେକ ଆଦର୍ଶକୁ ନେଇ ବଞ୍ଚିବା ହିଁ ସଂସ୍କୃତି । ଏହି ସଂସ୍କୃତି ଶିକ୍ଷାରୁ ହିଁ ଆରମ୍ଭ ହୋଇଥାଏ । ଏଣୁ ଜୀବନର ମାନଦଣ୍ଡକୁ ସୁଦୃଢ଼ କରିବା ପାଇଁ ଶିକ୍ଷା ଗ୍ରହଣ ଅର୍ଥାତ୍ ଅକ୍ଷର ଶିକ୍ଷା ନିତାନ୍ତ ଆବଶ୍ୟକ ।

ଚିରନ୍ତନ ସତ୍ୟ ଉପରେ ସମାଜ ଗଢ଼ିବାକୁ ହେଲେ ସବୁ ସ୍ତରରେ ଆସ ଚେତନା ସୃଷ୍ଟି କରି ନାରୀ ସାକ୍ଷରତା ହାର ବୃଦ୍ଧି କରାଯିବାର ଯଥେଷ୍ଟ ଆବଶ୍ୟକତା ରହିଛି । କାରଣ ମା'ଙ୍କ ଯତ୍ନ ବିନା ଶିଶୁର ଭୁଣ୍ଡାଙ୍କ ବ୍ୟକ୍ତିତ୍ୱର ପରିପ୍ରକାଶ ସମ୍ପୂର୍ଣ୍ଣ ଅସମ୍ଭବ । ଆଜିର ଶିଶୁ ଆସନ୍ତା କାଲିର ନାଗରିକ । ଶିଶୁର ବ୍ୟକ୍ତିତ୍ୱ ପରିପ୍ରକାଶ ଦିଗରେ ସମାଜ ଯେତିକି ସାହାଯ୍ୟ ଦେବ, ସେ ସମାଜକୁ ସେହି ଅନୁଯାୟୀ ପରବର୍ତ୍ତୀ ଅବସ୍ଥାରେ ସହଯୋଗ କରିବ ।

ନାରୀ ସାକ୍ଷରତା ହାର ବୃଦ୍ଧି, ନାରୀ ନିର୍ଯ୍ୟାତନା ରୋକିବାରେ ସହାୟକ ହୋଇ ସାଂସ୍କୃତିକ ସଚେତନତା ବୃଦ୍ଧି କରି ଜାତିକୁ ଉନ୍ନତି ସ୍ତରରେ ପହଞ୍ଚାଏ । କିନ୍ତୁ ଦାରିଦ୍ର୍ୟ, ସାମାଜିକ ରକ୍ଷଣଶୀଳତା, କୁସଂସ୍କାର ପ୍ରଭୃତି ଯୋଗୁଁ ଆମ ସମାଜରେ ନାରୀ ସାକ୍ଷରତା ହାର ଯଥେଷ୍ଟ ବୃଦ୍ଧି ହୋଇ ପାରୁନାହିଁ । ଫଳରେ ଅଳ୍ପ ବୟସରେ ବିବାହ, ବାରମ୍ବାର ଗର୍ଭ ଧାରଣ ଓ ପ୍ରସବ ତଥା ପୁଷ୍ଟି ହୀନତା ଆଦି କାରଣରୁ ଶିଶୁ ଓ ମାତୃ ମୃତ୍ୟୁ ହାର ବୃଦ୍ଧି ପାଏ । ୧୮ ବର୍ଷରୁ କମ୍ ବୟସ୍କା ଝିଅମାନେ ଶାରୀରିକ କିମ୍ବା ମାନସିକ ଦୃଷ୍ଟିକୋଣରୁ ସନ୍ତାନ ପ୍ରସବ କରିବା ପାଇଁ ଉପଯୁକ୍ତ ନୁହନ୍ତି । ଆନ୍ତର୍ଜାତୀୟ ଯୋଜନାବଦ୍ଧ ପିତାମାତା ସଙ୍ଗଠନ ତା'ର ଏକ ସଦ୍ୟ ପ୍ରକାଶିତ ରିପୋର୍ଟରେ ଦର୍ଶାଇଛନ୍ତି ଯେ, ଏସିଆର ଶତକଡ଼ା ୧୮ ଭାଗ, ଆଫ୍ରିକାର ଶତକଡ଼ା ୧୬ ଭାଗ, ଲାଟିନ୍ ଆମେରିକାର ଶତକଡ଼ା ୮ ଭାଗ ଝିଅଙ୍କୁ ୧୫ ବର୍ଷରୁ କମ୍ ବୟସରେ ବିବାହ ଦିଆଯାଉଛି । ଏଥିରେ ଆହୁରି ମଧ୍ୟ କୁହାଯାଇଛି ଯେ, ବିକାଶଶୀଳ ରାଷ୍ଟ୍ର ଅପେକ୍ଷା ବିକାଶୋନ୍ମୁଖୀ ରାଷ୍ଟ୍ରରେ ଅଧିକ ସଂଖ୍ୟକ ମହିଳା ପ୍ରସବ ବେଳେ ମୃତ୍ୟୁ ମୁଖରେ ପଡ଼ନ୍ତି । ଆମ ଓଡ଼ିଶାରେ ଶତକଡ଼ା ୪୨.୭ ଭାଗ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ରହିଥିବା ବେଳେ ଶତକଡ଼ା ୩୨.୫୦ ଭାଗ ନାରୀ ସାକ୍ଷର ଅଛନ୍ତି, ଯାହା ଫଳରେ ଶିଶୁ ମୃତ୍ୟୁ ହାର ପ୍ରତି ହଜାରରେ ୧୨୨ରେ ପହଞ୍ଚି ଦେଶରେ ପ୍ରଥମ ସ୍ଥାନ ଅଧିକାର କରିଛି ।

ବର୍ତ୍ତମାନ ଦେଶର ୨୫୦ଟି ଜିଲ୍ଲାକୁ ସମ୍ପୂର୍ଣ୍ଣ ସାକ୍ଷରତା କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯାଇଛି । ୧୯୮୮ ମସିହା ମଇ ... ତାରିଖରୁ ରାଷ୍ଟ୍ରୀୟ ସାକ୍ଷରତା ମିଶନ୍ କାର୍ଯ୍ୟକାରୀ ... ସାକ୍ଷରତା କାର୍ଯ୍ୟକ୍ରମକୁ ଆଗେଇ ନେଇଛି । "ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମକୁ ଚରିତାର୍ଥ କରିବା ପାଇଁ ସାର୍ବଜନୀନ ପ୍ରାଥମିକ ଶିକ୍ଷା ଓ ସମସ୍ତଙ୍କ ପାଇଁ ସାକ୍ଷରତା ଭଳି ଦୁଇଟି ଯୋଜନା ହାତକୁ ନିଆଯାଇଛି । ସମସ୍ତଙ୍କ ପାଇଁ ଶିକ୍ଷାର ଅର୍ଥ ହେଲା, ଦେଶର ମୋଟ ୧୪ ବର୍ଷର ୯ରୁ ୨୦ ନିୟୁତ ବାଳକ ବାଳିକାଙ୍କୁ ସାକ୍ଷର କରିବା ଏବଂ ୧୫ରୁ ୩୫ ବର୍ଷ ମଧ୍ୟରେ ଦେଶର ୧୦.୩ ନିୟୁତ ପୁରୁଷ ଯୁବତୀଙ୍କୁ ସାକ୍ଷର କରିବା । ସମସ୍ତଙ୍କ ପାଇଁ ଶିକ୍ଷା ... ପାଇଁ ଧାର୍ଯ୍ୟ ଲକ୍ଷ୍ୟର ଶତକଡ଼ା ୬୦ ଭାଗ ହେଉଛନ୍ତି ... ଯୁବକ ଯୁବତୀମାନଙ୍କ ମଧ୍ୟରେ ଶତକଡ଼ା ୬୦ ଭାଗ ... ମହିଳା ଅନ୍ତର୍ଭୁକ୍ତ । ଆମ ଭାରତ ବର୍ଷର କେରଳ ରାଜ୍ୟ ପ୍ରଥମ ସମ୍ପୂର୍ଣ୍ଣ ସାକ୍ଷର ରାଜ୍ୟର ଗୌରବ ଅର୍ଜନ କରିପାରିଛି । ଆନୁମାନିକ ଭାବେ ତା ୧୮-୪-୧୯୯୦ ରିଖ ଗୁରୁବାର ଦିନ କେରଳର କୋଜିକୋଡ଼ଠାରେ ଏହା ଘୋଷିତ ହୋଇଛି । ଏହି ଯୋଜନା ଘୋଷଣା ଭାରତର ଆବାଳ ବୃଦ୍ଧ ବନିତାଙ୍କୁ ଏକ ନୂତନ ପ୍ରେରଣା ଯୋଗାଇଛି ସାକ୍ଷରତା ନାବକୁ ଆଗେଇ ନେବା ନିମନ୍ତେ ।

ସାକ୍ଷରତା ହାର ବୃଦ୍ଧି କନ୍ୟା ଭ୍ରୁଣ ହତ୍ୟା, ବାଲ୍ୟ ବିବାହ ଓ ସତୀ ପ୍ରଥା ଭଳି ନାରକୀୟ ଉଦ୍ୟମକୁ ରୋକିବାରେ ବିଶେଷ ସହାୟକ ହୁଏ । ଏଠାରେ କେରଳ ଓ ରାଜସ୍ଥାନକୁ ... ନିଆଯାଇପାରେ । ୧୯୯୧ ଜନଗଣନା ଅନୁଯାୟୀ କେରଳ ... ମୋଟ୍ ଜନସଂଖ୍ୟାରେ ଏକ ହଜାର ପୁରୁଷ ପିଛା ୧୦୩୬ ଜଣ ମହିଳା ଅଛନ୍ତି । କିନ୍ତୁ କେରଳ ରାଜ୍ୟରେ ମହିଳାମାନଙ୍କ ତୁଳନାତ୍ମକ ହାର ପୁରୁଷଙ୍କ ଅପେକ୍ଷା ଅଧିକ । ସେଠାରେ ପ୍ରତି ଏକ ହଜାର ପୁରୁଷ ପିଛା ମହିଳାଙ୍କ ସଂଖ୍ୟା ହେଉଛି ୧୦୩୦ । ଏଣୁ ଏଥିରୁ ଅନୁମିତ ହୁଏ ଯେ, କନ୍ୟା ଭ୍ରୁଣ ହତ୍ୟାକୁ ସେଠାରେ ନିରୁତ୍ସାହିତ କରାଯାଉଛି । କିନ୍ତୁ ଅନ୍ୟ ପକ୍ଷରେ ରାଜସ୍ଥାନରେ ନାରୀ ସାକ୍ଷରତା ହାର ମାତ୍ର ୨୧ ଭାଗ । ଯାହା ଫଳରେ ବର୍ତ୍ତମାନ ମଧ୍ୟ ସେଠାରେ ବାଲ୍ୟ ବିବାହ ଓ ସତୀ ପ୍ରଥା ଭଳି କାର୍ଯ୍ୟକୁ ଉତ୍ସାହିତ କରାଯାଉଛି । "ରୂପ କନ୍‌ୱାର" ଘଟଣା ଏହାର ଜ୍ୱଳନ୍ତ ପ୍ରମାଣ ।

ଆମ ଦେଶରେ ଲର୍ଡ ରିପନ୍‌ଙ୍କ ସମୟରୁ ପ୍ରତି ଦଶ ବର୍ଷରେ ଥରେ ଜନଗଣନା ହୁଏ । ଏଥିରୁ ଆମେ ଦେଶର ଏକ ସମ୍ପୂର୍ଣ୍ଣ ଚିତ୍ର ପାଉ । ୧୮୮୨ ମସିହାରେ ଭାରତୀୟ ଶିକ୍ଷା କମିଶନ୍ ଗଠନଠାରୁ ୧୯୮୬ରେ ଗଠିତ ଜାତୀୟ ଶିକ୍ଷା ନୀତି ପର୍ଯ୍ୟନ୍ତ ଶହେ ବର୍ଷରୁ ଊର୍ଦ୍ଧ୍ୱ କାଳ ମଧ୍ୟରେ ନାରୀ ଶିକ୍ଷାର ପ୍ରସାର ପାଇଁ ବହୁ ନୀତି ପ୍ରଣୀତ ହୋଇଛି । ଏହି ସମୟରେ ନାରୀ ସାକ୍ଷରତାକୁ ଯଦି ପର୍ଯ୍ୟାଲୋଚନା କରାଯାଏ, ତେବେ ଏତିକି ବୁଝାଯାଇପାରେ ଯେ, ଯଦିଓ ନାରୀ ସାକ୍ଷରତା ହାର ବୃଦ୍ଧି ପାଇଛି, ତଥାପି ଏହା ସନ୍ତୋଷଜନକ ନୁହେଁ । ନିମ୍ନ ସାରଣୀରୁ ଏହା ୧୯୦୧ରୁ ୧୯୯୧ ପର୍ଯ୍ୟନ୍ତ ଦେଶର ନାରୀ ସାକ୍ଷରତା ହାର (ଶତକଡ଼ା) ନିମ୍ନରେ ପ୍ରଦାନ କରାଗଲା:—

| ମସିହା | ସାକ୍ଷରତା ହାର |
|---|---|
| ୧୯୦୧ | ୦·୬୦ ଭାଗ |
| ୧୯୧୧ | ୧·୦୫ ଭାଗ |
| ୧୯୨୧ | ୧·୮୧ ଭାଗ |
| ୧୯୩୧ | ୨·୯୩ ଭାଗ |
| ୧୯୪୧ | ୭·୩୦ ଭାଗ |
| ୧୯୫୧ | ୭·୯୩ ଭାଗ |
| ୧୯୬୧ | ୧୨·୯୫ ଭାଗ |
| ୧୯୭୧ | ୧୮·୬୯ ଭାଗ |
| ୧୯୮୧ | ୨୪·୮୨ ଭାଗ |
| ୧୯୯୧ | ୩୯·୪୨ ଭାଗ |

ପୃଥିବୀର ୯୪୮ ନିୟୁତ ନିରକ୍ଷର ପ୍ରୌଢ଼ଙ୍କ ମଧ୍ୟରୁ ଶତକଡ଼ା ପ୍ରାୟ ଦୁଇ ତୃତୀୟାଂଶ ହେଉଛନ୍ତି ମହିଳା । ଏହାଛଡ଼ା ଅଧାରୁ ବିଦ୍ୟାଳୟରେ ପାଠପଢ଼ା ଛାଡୁଥିବା ୧୩୦ ନିୟୁତ ପିଲାଙ୍କ ମଧ୍ୟରୁ ଶତକଡ଼ା ୭୦ ଭାଗ ହେଉଛନ୍ତି ବାଳିକା ।

ନାରୀ ଶିକ୍ଷା ପ୍ରସାର ମାଧ୍ୟମରେ ସମାଜରେ ବୈପ୍ଳବିକ ପରିବର୍ତ୍ତନ ଆଣାଯାଇ ପାରିବ । କାରଣ ଏହା ଆମ ପ୍ରଗତି ହାସଲ କରିବାରେ ସାହାଯ୍ୟ କରେ । କାରଣ ଶିକ୍ଷିତ ମହିଳାମାନେ ବହୁତ ସମସ୍ୟାର ସମାଧାନ ନିଜେ ନିଜେ କରିପାରନ୍ତି । ବହୁ ବିଳମ୍ବରେ ବିବାହ କରିବା, ପରିବାର ନିୟନ୍ତ୍ରଣ ଯୋଜନାକୁ ସ୍ୱୀକାର କରିବା ଏବଂ ଶିଶୁର ଉପଯୁକ୍ତ ଯତ୍ନ ନେବା ଶିକ୍ଷିତା ନାରୀଙ୍କ ଦ୍ୱାରା ସମ୍ଭବ ହୋଇଥାଏ ।

ଆଜିକାଲି ପ୍ରତି ଗାଁ ଗଣ୍ଡାରେ ଯଦିଓ ଶିକ୍ଷାନୁଷ୍ଠାନମାନ ଖୋଲି ସାକ୍ଷରତା ହାର ବୃଦ୍ଧି କରାଯାଉଛି, ତଥାପି ଏହା ଶିକ୍ଷାର ଗୁଣାତ୍ମକ ବିକାଶ ଦିଗରେ ବିଶେଷ ସହାୟକ ହେଉନାହିଁ । ଏଣୁ ଆସନ୍ତୁ ସାକ୍ଷରତା ହାର ବୃଦ୍ଧି ଘଟାଇବା ସଙ୍ଗେ ସଙ୍ଗେ ଶିକ୍ଷାର ଗୁଣାତ୍ମକ ବିକାଶ ଦିଗରେ ଯତ୍ନଶୀଳ ହୋଇ ସମାଜର ଦୁର ଇଙ୍ଗିତ ଓ ପ୍ରତିକୂଳ ପରିସ୍ଥିତିକୁ ଏଡ଼ାଇ ପ୍ରତ୍ୟେକ ବ୍ୟକ୍ତିର ଅନ୍ତର୍ନିହିତ ପ୍ରତିଭାର ଉନ୍ମୋଚନ ପାଇଁ ନାରୀ ସାକ୍ଷରତାକୁ ଗୁରୁତ୍ୱ ଦେବା । କାରଣ ପ୍ରତ୍ୟେକ ମହିଳା ମା'ର ଭୂମିକାରେ ଅବତୀର୍ଣ୍ଣ ହୋଇ ଆଦର୍ଶ ପରିବାର ଗଠନ କରିବା ସହିତ ସହଧର୍ମିଣୀ ଭାବେ ସ୍ୱାମୀଙ୍କୁ ସହଯୋଗ କରି ସେମାନଙ୍କୁ ଉନ୍ନତ ପଥରେ ପରିଚାଳିତ କରନ୍ତି । ଯାହା ଫଳରେ ଦେଶର ସାମାଜିକ, ଅର୍ଥନୈତିକ ଓ ଶାସନଗତ ବ୍ୟବସ୍ଥା ସୁନିୟନ୍ତ୍ରିତ ହୋଇ ଦେଶ ସମୃଦ୍ଧିଶାଳୀ ହୁଏ ।

ମା' ଦଶଭୁଜା ଆମକୁ ଚେତାଇ ଦିଅନ୍ତି ଯେ, ନାରୀ ଏକ ସଙ୍ଗେ ଦଶଟି କାର୍ଯ୍ୟ ସମ୍ପାଦନ କରିବାକୁ ସକ୍ଷମ । ନାରୀ ଶକ୍ତି ଏକ ମହାନ୍ ଶକ୍ତି । ନାରୀ ଶକ୍ତିକୁ ଅବହେଳା କରିବା ଅର୍ଥ ଦେଶ ତଥା ସମାଜର ପ୍ରଗତିରେ କୁଠାରାଘାତ କରିବା ।

ଆଡ୍‌ଭୋକେଟ୍,
ଅସ୍କା, ଗଞ୍ଜାମ ।



ରାଜଭବନଠାରେ କେନ୍ଦ୍ର ମନ୍ତ୍ରୀ ଶ୍ରୀ ଏ. କେ. ଆଣ୍ଟୋନୀ, ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀଙ୍କ ସହିତ ଆଲୋଚନା କରୁଛନ୍ତି ।

# ଜନ ସହଯୋଗରେ ଉଜୁଡ଼ା ଜଙ୍ଗଲର ପୁନରୁଦ୍ଧାର

* ଚୌଧୁରୀ ଗୌରହରି ମିଶ୍ର *

ମଣିଷ ଏକା ଏକା ବଞ୍ଚେ ନାହିଁ । ପ୍ରକୃତିର ଏକ ଅଂଶ ଭାବେ ମଣିଷର ସ୍ଥିତି । ଅନ୍ୟାନ୍ୟ ଜୀବଜଗତ, ବିଭିନ୍ନ ଜୀବନ ପ୍ରଣାଳୀ ଏବଂ ପ୍ରକୃତିମାତା ଉପରେ ଆମର ଜୀବନ ଅତି ନିବିଡ଼ ଭାବରେ ନିର୍ଭରଶୀଳ । ପ୍ରକୃତରେ ଦେଖିବାକୁ ଗଲେ ଅରଣ୍ୟ ପ୍ରକୃତିର ଏକ ଜୀବନ୍ତ ଆଲେଖ୍ୟ । ଏହା ଯେ କେବଳ ଦୂଷିତ ପରିବେଶକୁ ନିର୍ମଳ କରି ସୁରକ୍ଷା ପ୍ରଦାନ କରେ ତାହା ନୁହେଁ । ଆମ୍ଭମାନଙ୍କର ଅନେକ ଅତି ଆବଶ୍ୟକ ସାମଗ୍ରୀ ଯୋଗାଇଦିଏ । ନାନା ପ୍ରକାର ଅଳିଆ ଆବର୍ଜନାକୁ ମାଟିରେ ମିଶାଇ ଦେଇ ପାରିବା, ମାଟିର ଉତ୍ପାଦିକା ଶକ୍ତିକୁ ଅବ୍ୟାହତ ରଖିପାରିବା ଓ ଏସବୁ ସତ୍ତ୍ୱେ ସଦା ନିର୍ମଳ ରହି ପାରିବା ଭଳି ପୃଥିବୀର ଅଧିକାଂଶ ଉପକାରୀ ଗୁଣ ଏହି ବୃକ୍ଷଲତାମାନଙ୍କର ଅବଦାନ କହିଲେ ଅତ୍ୟୁକ୍ତି ହେବନାହିଁ । ଜଙ୍ଗଲ ଯୋଗୁଁ ମାଟି ଧୋଇଯାଏ ନାହିଁ, ମାଟିର ଉର୍ବରତା ବଢ଼େ, ଜଳଚକ୍ର ଅବ୍ୟାହତ ରହେ ଓ ବାୟୁମଣ୍ଡଳର ଅମ୍ଳଜାନ ଅଭାବ ଦୂର ହୁଏ । ସେଥିପାଇଁ ପରିବେଶର ସୁରକ୍ଷା ନିମିତ୍ତ ସର୍ବପ୍ରଥମେ ବଣ ଜଙ୍ଗଲର ସୁରକ୍ଷା କଥା ଉପରେ ସମସ୍ତେ ଏତେ ଜୋର ଦିଅନ୍ତି । ବାସ୍ତବତା ଦୃଷ୍ଟିରୁ ବିଚାରକଲେ ଆମେ ଜାଣିପାରିବା ଯେ ଆମର ସମସ୍ତ ପ୍ରାକୃତିକ ସମ୍ପଦଗୁଡ଼ିକ ଓ ସେହି ଦୃଷ୍ଟିରୁ ଆମର ଜଙ୍ଗଲ ସମ୍ପଦ ମଧ୍ୟ ଆମର ଭବିଷ୍ୟତ ବଂଶଧରଙ୍କର ଅମାନତ । ସେତିକି ବୁଝିପାରିଲେ ଜଙ୍ଗଲର ସମସ୍ୟାଗୁଡ଼ିକର ସମାଧାନ ନିମିତ୍ତ ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ପାଇବା ଓ ଏହା ଅପେକ୍ଷାକୃତ ଭାବେ ସହଜସାଧ୍ୟ ହେବ ।

ଦୂରସଂବେଦୀ ସାଟେଲାଇଟ୍ ଅନୁସନ୍ଧାନ ଦ୍ୱାରା ଜଣାଯାଇଛି ଯେ ୧୯୯୩ ସୁଦ୍ଧା ଓଡ଼ିଶାରେ ଉଜୁଡ଼ା ଜଙ୍ଗଲର କ୍ଷେତ୍ରଫଳ ୧୯,୬୯୯ ବର୍ଗକିଲୋମିଟର । କେବଳ ସରକାରୀ ପ୍ରଚେଷ୍ଟାରେ ଏହାର ପୁନରୁଦ୍ଧାର ଅସମ୍ଭବ । ତେଣୁ ଯେଉଁଠାରେ ସ୍ଥାନୀୟ ଲୋକେ ଆଗେଇ ଆସୁଅଛନ୍ତି ସେଠାରେ ପୁନରୁଦ୍ଧାର କାର୍ଯ୍ୟକ୍ରମ ସଫଳ ହୋଇ ପାରୁଥିବାର ଦେଖାଯାଉଛି । ଓଡ଼ିଶାରେ ଏଭଳି ପ୍ରଚେଷ୍ଟା ବେଶ୍ ଆଗରୁ ଆରମ୍ଭ ହୋଇଥିଲା । ସରକାରୀ ଭାବରେ ମଧ୍ୟ ୧୯୮୮ରୁ ଏଦିଗରେ ସରକାର ପ୍ରୋତ୍ସାହନ ଯୋଗାଇ ଆସୁଅଛନ୍ତି । ଅନୁଭବ ଅନୁସାରେ ସରକାର ଏ ଦିଗରେ ୧୯୯୦ ଓ ପରେ ୧୯୯୩ରେ କେତେକ ପ୍ରଣାଳୀଗତ ତ୍ରୁଟି ସୁଧାରିବା ନିମିତ୍ତ ପଦକ୍ଷେପ ମଧ୍ୟ ନେଇଛନ୍ତି । ସରକାରୀ ଭାବରେ ଦେଖିବାକୁ ଗଲେ ଓଡ଼ିଶା ଏ ଦିଗରେ ଅଗ୍ରଣୀ । କେତେକ ସ୍ଥାନରେ ସ୍ଥାନୀୟ ଗ୍ରାମବାସୀମାନେ, ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଏବଂ ବନ ବିଭାଗର କର୍ମଚାରୀମାନେ ଏ ଦିଗରେ ଭଲ କାମ କରିଅଛନ୍ତି । ମାତ୍ର ଏ ପର୍ଯ୍ୟନ୍ତ ଏହା ଏକ ଜନ ବା ଗଣ ଆନ୍ଦୋଳନରେ ରୂପ ନେଇପାରିଲା ନାହିଁ । ଅନେକ ଦିଗରେ ବହୁ ବାଧା ବିଘ୍ନ ଓ ଅସମାହିତ ପ୍ରଶ୍ନ ରହିଯାଇଛି । ଏଗୁଡ଼ିକର ସମାଧାନ ମଧ୍ୟ ଆବଶ୍ୟକ । ସରକାର ଓ ଜନସାଧାରଣ ଉଭୟଆଡୁ ଏଥିପାଇଁ ଚେଷ୍ଟା ଲୋଡ଼ା । ଏ ସଂକ୍ରାନ୍ତରେ ଗୋଟିଏ ସଫଳ ପ୍ରଚେଷ୍ଟାର ଅବତାରଣା ଉଚିତ୍ ହେବ ବୋଲି ମୋର ମତ ।

ମୟୂରଭଞ୍ଜ ଜିଲ୍ଲାର ପୁରୀଖୁଣ୍ଟା ଗ୍ରାମ । ବେତନୋଟୀ ରେଞ୍ଜର ଓ ପୁରିଣ୍ଡା ଗ୍ରାମପଞ୍ଚାୟତର ଅନ୍ତର୍ଗତ । ଗ୍ରାମ ସମୁଦାୟ ୧୦୭ ପରିବାର ବାସ କରନ୍ତି ଓ ଲୋକ ସଂଖ୍ୟା ୫୭୯ । ସେମାନେ ସାଧାରଣତଃ ମାହାନ୍ତ ଓ ସମ୍ପ୍ରଦାୟର । ୧୯୭୮ ମସିହା ସୁଦ୍ଧା ଗ୍ରାମ ପାଖରେ ପୁରୀଖୁଣ୍ଟା ଖେସରା ଜଙ୍ଗଲ ସମ୍ପୂର୍ଣ୍ଣଭାବେ ଉଜୁଡ଼ି ଯାଇଥିଲା । ଗ୍ରାମର ଜଣେ ନେତୃସ୍ଥାନୀୟ ବ୍ୟକ୍ତି ଶ୍ରୀ ନକୁଳ ମହାନ୍ତଙ୍କ ପ୍ରେରଣାରେ ଗ୍ରାମବାସୀମାନେ ୧୯୭୮ ମସିହାରୁ ପ୍ରାୟ ହେକ୍ଟର ପରିମିତ 'ଏହି ଉଜୁଡ଼ା ଜଙ୍ଗଲଟିକୁ ରକ୍ଷଣା ଆରମ୍ଭକଲେ । ଜଙ୍ଗଲ ମାଟିରେ ରହିଥିବା ଗୁଣ୍ଡି, ମଞ୍ଜିରୁ ପୁଣି ଥରେ ପ୍ରାକୃତିକ ଶାଳ ଜଙ୍ଗଲ ବର୍ତ୍ତମାନ ଆପଣ ନିଜ ଆଖିକୁ ବିଶ୍ୱାସ କରିପାରିବେ ନାହିଁ । ଏହାଦ୍ୱାରା ଆସ୍ତେ ଆସ୍ତେ ନିକଟବର୍ତ୍ତୀ ଗ୍ରାମର ଲୋକେ ହେଲେ । ସେମାନଙ୍କର ଲୋଲୁପ ଦୃଷ୍ଟିରୁ ଜଙ୍ଗଲ ରକ୍ଷା ଆସ୍ତେ ଆସ୍ତେ କଷ୍ଟକର ହୋଇପଡ଼ିଲା । ତେଣୁ ଗ୍ରାମର ଭଉଣୀମାନେ ଅଣ୍ଟା ଭିଡ଼ି 'ଜଙ୍ଗଲ ସୁରକ୍ଷା ସମିତି' ଗଠନ କଲେ । ୩-୧୦-୧୯୯୩ ତାରିଖରେ ଏହା ଗଠିତ ହେଲା । ମା'ମାନେ ଉତ୍ସାହର ସହିତ ଜଙ୍ଗଲ ସୁରକ୍ଷା ଲାଗିପଡ଼ିଅଛନ୍ତି । ଶ୍ରୀମତୀ ଚୂଡ଼ାମଣୀ ମହାନ୍ତ ସଭାନେତ୍ରୀ ଏବଂ ଶ୍ରୀମତୀ ପାର୍ବତୀ ମହାନ୍ତ କାର୍ଯ୍ୟ କରୁଛନ୍ତି । ବର୍ତ୍ତମାନ ପୁରୁଷ ଓ ସ୍ତ୍ରୀ ଉଭୟ ଜଙ୍ଗଲ ରକ୍ଷଣାବେକ୍ଷଣରେ ମନପ୍ରାଣ ଦେଇ ଲାଗି ସେମାନଙ୍କ ସହ ଆଲୋଚନାରୁ ଯାହା ଜଣାପଡ଼ିଲା

ନିଶ୍ଚିତ ଭାବେ ଅନ୍ୟମାନଙ୍କୁ ଉତ୍ସାହ ଯୋଗାଇଦେବ । ଜଙ୍ଗଲ ବଢ଼ିଯାଇଛି ଓ ଲୋକେ ନିୟମିତ ଭାବେ ନିମ୍ନଲିଖିତ ସୁବିଧା ଉପଭୋଗ କରି ପାରୁଛନ୍ତି ।

| କ୍ରମ ସଂଖ୍ୟା | ବିଭିନ୍ନ ଜିନିଷର ବର୍ଣ୍ଣନା ଦ୍ରବ୍ୟର ନାମ | ପରିମାଣ ଓ ଅନୁମାନିକ ମୂଲ୍ୟ | ପ୍ରତିବର୍ଷ ଗ୍ରାମ ହିସାବରେ ଅନୁମାନିକ ମୂଲ୍ୟ (ଟଙ୍କା ହିସାବରେ) |
|---|---|---|---|
| (୧) | (୨) | (୩) | (୪) |
| ୧ | ବାଉଁଶ (ଶକ୍ତି ମିଶ୍ରିତ) | ୫ ୨୫୦ ହିସାବରେ ୭ ଲକ୍ଷ ପାଇଁ | ୧,୨୫୦୦୦.୦୦ |
| ୨ | କାଠି, ଖୁଣ୍ଟ ଓ ଖୁଣ୍ଟିଆ | ୫ ୧/୨ ଟ୍ରାକ୍ଟର (ଟ ୨୦ ଗଡ଼ି ହିସାବରେ) | ୫ ୧,୦୨,୨୦୦.୦୦ |
| ୩ | ଜାଳେଣି | ବର୍ଷକୁ ୧ ୧/୨ ଟ୍ରାକ୍ଟର ହିସାବରେ | ୨୦,୫୫୦.୦୦ |
| ୪ | ଦ୍ରୁଆ | ବର୍ଷକୁ ୧ କି.ଗ୍ରା. ହିସାବରେ | ୨,୨୫୦.୦୦ |
| ୫ | ଏହ ପ୍ରତିମ ପାଇଁ ଏକ ଓ ଘେରି | ବର୍ଷକୁ ୨ ଗାଡ଼ି ହିସାବରେ (ଟ ୫୦ ଗଡ଼ି ହିସାବରେ) | ୨୨,୨୦୦.୦୦ |
| ୬ | ଘର ପାଇଁ ଛୁଟି | ବର୍ଷକୁ ୫ ସେଟି (ଟ ୨୦ ସେଟ ହିସାବରେ) | ୧୦,୨୦୦.୦୦ |
| ୭ | ଶୁଖୁ ପତ୍ର | ବର୍ଷକୁ ୨ ଟ୍ରାକ୍ଟର ହିସାବରେ | |
| ୮ | ଶୁଖୁ ପତ୍ରି | ବର୍ଷକୁ ୫୦ କି.ଗ୍ରା. ହିସାବରେ | ୮,୬୦୦.୦୦ |
| ୯ | ଶୁଖୁ ଘାସି | ବର୍ଷକୁ ୨୫ କି.ଗ୍ରା. ହିସାବରେ | ୬୭,୫୦୦.୦୦ |
| ୧୦ | ଫଳ | (ମୋଟ ଗ୍ରାମ ୨୫ କି.ଗ୍ରା. ହିସାବରେ) | ୨୧,୦୦୦.୦୦ |
| ୧୧ | ମ୍ରି, କଙ୍କଡ଼ ଗୁଳି ଫୁଲ ଇତ୍ୟାଦି ହିସାବରେ [illegible] | ବର୍ଷକୁ ୫ କି.ଗ୍ରା. ହିସାବରେ (ଟ ୩ ଗଡ଼ି ହିସାବରେ) | ୨୫୦.୦୦<br>୧,୨୦୫.୦୦ |
| ୧୨ | ଗ୍ରାମ ଉପଯୋଗୀ ଜିନ୍ସ | ବର୍ଷକୁ ୨୦ କି.ଗ୍ରା. ହିସାବରେ (ଟ ୨୦ ଗଡ଼ି ହିସାବରେ) | ୧୨,୦୦୦.୦୦ |
| ୧୩ | ଝୁଣ ଘାସି | ବର୍ଷକୁ ୨୫ କି.ଗ୍ରା. ମୋଟ ଗ୍ରାମ ପାଇଁ ଓ ୫ ୧୦୦ ଗଡ଼ି ହିସାବରେ | ୨,୫୦୦.୦୦ |
| ୧୪ | ଅନୁମାନିକ ବୈଷୟ ପାଇଁ (ଔଷଧୀୟ ଗଛ-ଲତାପତ୍ର ଇତ୍ୟାଦି, ଫଳ, [illegible]) | ବୈଦ୍ୟଙ୍କ ଦ୍ୱାରା ସଂଗୃହୀତ ଓ ଗ୍ରାମବାସୀଙ୍କ ଅନୁମତି ମତେ । | ୧୦,୨୦୦.୦୦ |
| | | | ୯,୦୨,୫୫୦.୦୦ |

ଗ୍ରାମର ମୋଟ ଅର୍ଥ - ୫ ୨,୨୨୫.୨୫
ପ୍ରତି ପରିବାର ମୋଟ ଅର୍ଥ - ୫ ୨,୦୨୫.୫୦

ପ୍ରାକୃତିକ ଜଙ୍ଗଲ ବଢୁଛି ଓ ଗ୍ରାମବାସୀମାନେ ଉପରୋକ୍ତମତେ ସୁବିଧା ସୁଯୋଗ ପାଇପାରୁଛନ୍ତି । ଏସବୁ ସାଙ୍ଗକୁ ଲୋକମାନେ ଆଉ କେତେକ ସୁବିଧା ସୁଯୋଗ କଥା ଉଲ୍ଲେଖ କଲେ ଯାହା ବାସ୍ତବିକ ଅମୂଲ୍ୟ ମନେ ହେଲା । ସେଗୁଡ଼ିକ ହେଲା :—

(୧) ଆଗେ ଗ୍ରାମରେ ଖରାଦିନେ ପାଣିପାଇଁ ଅସୁବିଧା ହେଉଥିଲା । ବର୍ତ୍ତମାନ କୂଅଗୁଡ଼ିକରେ ଖରାଦିନେ ହାରାହାରି ଅଧିକ ଦୁଇଫୁଟ ପାଣି ରହୁଅଛି ଓ ଜଳକଷ୍ଟ ଦୂର ହୋଇଛି ।

(୨) ଗାଁ ପାଖରେ ଜଙ୍ଗଲ ଗଢ଼ି ଉଠିଥିବାରୁ ଖରାଦିନେ ଗ୍ରାମର ଜଳବାୟୁ ଟିକିଏ ଥଣ୍ଡା ଲାଗୁଛି ।

(୩) ବେଳେ ବେଳେ ଜଙ୍ଗଲକୁ ବନ୍ୟପ୍ରାଣୀ ଓ ପକ୍ଷୀମାନେ ଆସିବା ଦେଖାଗଲାଣି ।

(୪) ଗ୍ରାମର ଗୃହପାଳିତ ପଶୁମାନଙ୍କ ପାଇଁ ଗୋ ଖାଦ୍ୟ କଷ୍ଟ ଲାଘବ ହୋଇଛି । କାରଣ ସେମାନେ ଜଙ୍ଗଲ ଚରିବାକୁ ଯାଉଅଛନ୍ତି ।

(୫) ଜଙ୍ଗଲ ଉଜୁଡ଼ିଯିବା ପରେ ବର୍ଷା କମି ଯାଇଥିଲା ବର୍ତ୍ତମାନ ଜଙ୍ଗଲ ଗଢ଼ିଉଠିଲାପରେ ବର୍ଷା ଭଲ ହେଉଅଛି ।

(୬) ଲୋକମାନଙ୍କର ଶରୀର ଅସୁସ୍ଥ ହେଲେ ମାଗଣାରେ ଚେରମୂଳିକା ସଂଗ୍ରହ କରୁଥିବା ବୈଦ୍ୟଙ୍କର ସେବା ସହଜଲଭ୍ୟ ହୋଇପାରିଛି ।

ଅବଶ୍ୟ ଉପରୋକ୍ତ ମୂଲ୍ୟାୟନ ପଦ୍ଧତି ସମ୍ପର୍କରେ ଦ୍ୱିମତ ରହିପାରେ । କିନ୍ତୁ ଉଜୁଡ଼ା ଜଙ୍ଗଲର ପୁନରୁଦ୍ଧାର କାର୍ଯ୍ୟରେ ଲାଗିପଡ଼ିବା ଦ୍ୱାରା ଗ୍ରାମବାସୀ ଯେ ତାଙ୍କର ପରମ୍ପରାଗତ କେତେଗୁଡ଼ିଏ ଜରୁରୀ ଆବଶ୍ୟକତା ପୂରଣ କରିବା ସଙ୍ଗେ ସଙ୍ଗେ ଆର୍ଥିକ ଦୃଷ୍ଟିରୁ ଅଧିକ ସ୍ୱଚ୍ଛଳ ଜୀବନଯାପନର ସୁଯୋଗ ପାଇଅଛନ୍ତି ଏହା ନିଶ୍ଚିତ । ସର୍ବୋପରି ପରିବେଶ ଦୃଷ୍ଟିରୁ ଏହା ଅତ୍ୟନ୍ତ ଉପାଦେୟ । ଆଉ ଗୋଟିଏ ବଡ଼ କଥା ହେଲା ଏହାଦ୍ୱାରା ଗ୍ରାମର ପ୍ରତ୍ୟେକ ପରିବାର ଉପକୃତ ହୋଇଛନ୍ତି । ବଣ ଜଙ୍ଗଲରୁ ଏହି ପ୍ରତ୍ୟକ୍ଷ ଓ ପରୋକ୍ଷ ଲାଭ ସାଧାରଣ ଜନଜୀବନ ନିମିତ୍ତ ଅତ୍ୟନ୍ତ ମୂଲ୍ୟବାନ । ଏସବୁ ଗ୍ରହଣ କରି ଆମକୁ ମଧ୍ୟ ଜଙ୍ଗଲର ଉନ୍ନତି ନିମିତ୍ତ କିଛି ଦେବାକୁ ପଡ଼ିବ । ଅନ୍ୟାନ୍ୟ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମଠାରୁ ଏହା କୌଣସିମତେ ନ୍ୟୁନ ନୁହେଁ ବରଂ ଏହି କାର୍ଯ୍ୟକ୍ରମଟି ପରିବେଶର ଉନ୍ନତିସହ ଆମର ଆର୍ଥିକ ପ୍ରଗତିର ପରିପୂରକ ଅଟେ ।

ଏ ସବୁ ଦୃଷ୍ଟିରୁ ବିଚାର କରି ଆମର ରାଜ୍ୟରେ ଏହି କାର୍ଯ୍ୟକ୍ରମର ସାରବତ୍ତା ଜନସାଧାରଣ ଉପଲବ୍ଧି କରି ଏହି ଦିଗରେ ବନବିଭାଗ ସହ ସହଯୋଗ କରିବାକୁ ଆଗେଇ ଆସିଲେ ଆମର ବନ ପରିବେଶର ସୁରକ୍ଷା ଅନେକ ସହଜ ଓ ସମ୍ଭବ ହୋଇପାରିବ ।

"ଶନ୍ନୋ ଅସ୍ତୁ ଦ୍ୱିପଦେ । ଶଂ ଚତୁଷ୍ପଦେ ॥"

# କନ୍ଧ ସଂସ୍କୃତି ଓ କେଡୁ ପର୍ବ : ଫୁଲବାଣୀ ଜିଲ୍ଲା

* ସାର୍ ନଟବର ଦାସ *

ଓଡ଼ିଶାର ବଣ ଜଙ୍ଗଲ ଘେରା କୋରାପୁଟ୍, କଳାହାଣ୍ଡି, ସୁନ୍ଦରଗଡ଼, କେନ୍ଦୁଝର, ମୟୂରଭଞ୍ଜ ଓ ଫୁଲବାଣୀ ଜିଲ୍ଲାଗୁଡ଼ିକରେ ଯେ ଆଦିବାସୀମାନେ ବହୁ ପ୍ରାଚୀନ କାଳରୁ ବସବାସ କରି ଆସୁଛନ୍ତି, ଏ କଥା ଅନସ୍ୱୀକାର୍ଯ୍ୟ । ବର୍ତ୍ତମାନ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ଆଦିବାସୀ ସମ୍ପ୍ରଦାୟର ଲୋକମାନଙ୍କୁ ମଧ୍ୟ ଦେଖିବାକୁ ମିଳୁଛି । ତଥାପି ବଣ ପାହାଡ଼ ଭିତରେ ବଢ଼ି ଆସିଥିବା, ଏହି ଜାତିକୁ 'ଗିରିଜନ' କହିବାର ଯଥାର୍ଥତା ରହିଛି । ଆଦିବାସୀମାନେ ପ୍ରାଚୀନ ପ୍ରସ୍ତର ଯୁଗର ସେହି ପାହାଡ଼ି ସଭ୍ୟତାର ମଣିଷ ବୋଲି ଅନୁମାନ କରାଯାଏ । ସେ ଯାହା ହେଉନା କାହିଁକି ? ସମାଜର ନିମ୍ନ ସୋପାନରେ ଥିବା ଏହି ଆଦିବାସୀ ଯେ ବିଶ୍ୱମାନବର ବଂଶଧର ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ଆଦିବାସୀ ସଂସ୍କୃତି ଓ ପରମ୍ପରା ବିଷୟରେ ଅବଗତ ହେଲେ, ସେମାନଙ୍କର ସାମାଜିକ ଜୀବନ ଓ ଧର୍ମଚେତନାର ମହାନତା ପ୍ରତିପାଦିତ ହୁଏ ।

ଫୁଲବାଣୀ ଜିଲ୍ଲାର କନ୍ଧ ସଂସ୍କୃତି ବହୁ ପ୍ରାଚୀନ । ସେମାନଙ୍କର ସଂସ୍କୃତି ଓ ଭାଷାଗତ ବୈଶିଷ୍ଟ୍ୟ ନ ଥିଲେ ମଧ୍ୟ ବାରଟି ଜାତିର କନ୍ଧ ଏହି ଜିଲ୍ଲାରେ ବସବାସ କରନ୍ତି । ପାଙ୍ଗଲ କନ୍ଧ, ଶାସି କନ୍ଧ, ଗଣ୍ଡା କନ୍ଧ, ବଶାଡ଼ କନ୍ଧ, ଶବର କନ୍ଧ, ସୌରା କନ୍ଧ, ଡିମୁଦାରୀ କନ୍ଧ, ବେନିଆ କନ୍ଧ, ବାମ୍ପା କନ୍ଧ, ଅହରିଆ କନ୍ଧ, କୁଟିଆ କନ୍ଧ ଓ ଲେଙ୍ଗୁଟି କନ୍ଧ ଏହିପରି ଭାବେ ସେମାନଙ୍କର ଜାତିଗତ ସମ୍ପର୍କ । 'କୁଇ' ସେମାନଙ୍କର ମାତୃଭାଷା । ଏଇ କୁଇ ଶବ୍ଦର ଅର୍ଥ କନ୍ଧ ।

ଫୁଲବାଣୀଠାରୁ ଲାଇନପଡ଼ା ମଧ୍ୟରେ ବସବାସ କରୁଥିବା କନ୍ଧଙ୍କୁ ବାମ୍ପାକନ୍ଧ, ଖଜୁରୀପଡ଼ା ଲାଇନପଡ଼ା ମଧ୍ୟରେ ରହୁଥିବା କନ୍ଧଙ୍କୁ ଶାସି କନ୍ଧ, ଫିରିଙ୍ଗିଆଠାରୁ ଗୋଛାପଡ଼ା ମଧ୍ୟରେ ଥିବା କନ୍ଧଙ୍କୁ ଅହରିଆ କନ୍ଧ, ବେଲଘର ଓ କୋଟଗଡ଼ରେ ଥିବା କନ୍ଧଙ୍କୁ କୁଟିଆ କନ୍ଧ ଏବଂ ବୌଦ୍ଧ ଅଞ୍ଚଳରେ ବସବାସ କରୁଥିବା କନ୍ଧଙ୍କୁ ପାଙ୍ଗଲ କନ୍ଧ ବୋଲି କୁହାଯାଏ ।

କନ୍ଧମାନେ ଗିରିଜନ ହେଲେ ମଧ୍ୟ ମୂଳତଃ ସେମାନେ ହିନ୍ଦୁଧର୍ମାବଲମ୍ବୀ । ହିନ୍ଦୁଧର୍ମର ବାର ମାସରେ ତେର ପର୍ବ ପରି କନ୍ଧମାନଙ୍କର ବର୍ଷର ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ପର୍ବ ପାଳନ କରିଥାନ୍ତି । ଜ୍ୟେଷ୍ଠ ମାସରେ ଜ୍ୟେଷ୍ଠପୂଜା, ସାଧୁଗୁମ୍ଫି, ମାଚୁ; ଆଷାଢ଼ ମାସରେ ବର୍ଷା ଦେବତା ପୂଜା, ଧାନତଳି ପୂଜା : ଶ୍ରାବଣ ମାସରେ ଗୋରୁଗାଈ ପୂଜା, ପୁନି, ଭାଦ୍ରବ ମାସରେ ଛୁଆଁ ନୂଆଁଖିଆ; ଆଶ୍ୱିନ ମାସରେ ଖଣ୍ଡା, ଧନୁଶର, ବନ୍ଧୁକ, ଟାଙ୍ଗୀ ପୂଜା, ଛୁମୁରୀ ପୂଜା, ପୁତୁରା ପୂଜା; କାର୍ତ୍ତିକ ମାସରେ ବାଡ଼ିପୂଜା, ମାର୍ଗଶିର ମାସରେ କ୍ଷେତ ପୂଜା, ଲକ୍ଷ୍ମୀଚୁଡ଼ି ପୂଜା, ଡାଲୋଇ; ପୌଷ ମାସରେ ବଡ଼ରାବାଲି ପୂଜା, ପୁଷ ପୁନେଇ ପୂଜା; ମାଘମାସରେ ପର୍ବତ ପୂଜା, ପିତାବଳୀ ଗୁଡ଼ି ପୂଜା, ଛାତଗୋଇ; ଫାଲଗୁନ ମାସରେ କିର୍ତ୍ତନ ବା ମଣ୍ଡଳୀ ପୂଜା; ଚୈତ୍ର ମାସରେ ଦଣ୍ଡନାଚ, କଳିକା ପୂଜା; ବୈଶାଖ ମାସରେ ଖାସ୍ପୁଁ ଜଳ ପୂଜା । ଏହା ଦୁଆର ଡଙ୍ଗୀ, ଗୁହାଳ ପୂଜା, ଲିଙ୍ଗାରାଣୀ ଆଦି ପୂଜା କନ୍ଧସଂସ୍କୃତିର ପରମ୍ପରାଗତ ।

'କେଡୁ' ପର୍ବ ସମସ୍ତ ପୂଜା ବିଧିର ଏକ ଅନ୍ୟତମ । ଅଥଚ ଏହି ପୂଜା ଏକ ମାନସିକ ପୂଜା । ତେଣୁ ପ୍ରତି ବର୍ଷ ଏହା ପାଳନ କରାଯାଏ ନାହିଁ । ଏହା ଏକ ନିଷ୍ଠା ଓ ଭକ୍ତିର ପୂଜା ହୋଇଥିବାରୁ ବଞ୍ଚିବା ସର୍ବବିଧ ଉନ୍ନତି କଲେ ମାନସିକ କରାଯାଇ ପାଳନ କରାଯାଏ । ସାଧାରଣତଃ ଖରାମାସରେ ଏହି ପର୍ବ ଅନୁଷ୍ଠିତ ହୋଇଥାଏ । କନ୍ଧ ଦେବତା "ଏରା ପେନୁ ସଟରା ପେନୁ ତାରା ପେନୁ"ଙ୍କ ଉଦ୍ଦେଶ୍ୟରେ ଏହି ପର୍ବ ଉତ୍ସର୍ଗୀକୃତ । ସେ ପର୍ବରେ 'ଧରନୀ ପେନୁ' ମାଟି ଦେବତାର ପୂଜା ମଧ୍ୟ କରାଯାଇ ଥାଏ । ଗ୍ରାମର ପୂଜକଙ୍କୁ 'ଝଙ୍କର' କୁହାଯାଏ । କେଡୁ ପର୍ବଟି ମହା ସମାରୋହରେ ପନ୍ଦରଦିନ ନିଷ୍ଠାର ସହିତ ପାଳନ କରାଯାଏ । ପ୍ରଥମଦିନ ଝାଙ୍କର ଗ୍ରାମର ଏକ ସ୍ଥାନରେ ଲୁହାର ଫାଳଟି ମାଟିରେ ପୋତିଥାନ୍ତି । ଫାଳ ନିକଟରେ କାନ ଦେଇ ମାଟି ଭିତରୁ ଶବ୍ଦ ଶୁଣି ସେଠାରୁ କେତେଦୂରରେ ପାଣି ଅଛି ବୋଲି କହିଥାନ୍ତି ଏବଂ ସେହି ଅନୁସାରେ ସେ ସ୍ଥାନରେ ପାଣି ବାହାରିବା ପାଇଁ ଖସ ପୋତାଯାଏ । ପୂର୍ବରୁ ମାନସିକ କରି ରଖାଯାଇଥିବା ଘୁଷୁରିକୁ ସେଇଠାରେ ଏକ କାଠ ବା ବାଉଁଶରେ ଟାଙ୍ଗି ଦିଅନ୍ତି । ମାଈ ଘୁଷୁରୀ (କୋଠକୁ ମଝିରୁ କାଟି ଦୁଇ ପାଖ ପତଳା କରିଥାନ୍ତି, ମାଈ ଘୁଷୁରୀ ଗୋଟାଥାଏ) ଭିତରେ ବେକ ପୁରାଇ ଦିଅନ୍ତି । ମଲା ଘୁଷୁରୀକୁ ଖପରେ ଝୁଲାଇ ଦିଅନ୍ତି । ପରେ ଦେଇଥାନ୍ତି । ମଲା ଘୁଷୁରୀକୁ ଖପରେ ଝୁଲାଇ ଦେଇ ତାହାକୁ ରାନ୍ଧି ସମସ୍ତେ ଖାଇଥାନ୍ତି । କେଡୁ ଆରମ୍ଭ ହେଲେ ପନ୍ଦରଦିନ ଯାଏ ଗ୍ରାମରେ ଖାସି କଟାଯାଏ ଏବଂ ମଦ ମେଣ୍ଢା ଶଲପ ମାଂସରେ ଗାଁ ପୂରିଉଠେ । କେତେକ ସ୍ତ୍ରୀଲୋକ ଅଥବା ପୁରୁଷ ହୋଇ ଭାବରୁ ତି ମୁଣ୍ଡରେ ଧରି ଗାଁ ଦାଣ୍ଡ ପରିକ୍ରମା

କରନ୍ତି । ଯେତେ ଯିଏ ଖାଏ ; ଆଉ ଟିକେ ମାଟିରେ ପୋତି ଦିଅନ୍ତି । ପୁରୁଷ ଓ ସ୍ତ୍ରୀ ମିଳିତ ହୋଇ ଗୀତ ନାଚ କରନ୍ତି । ବଡ଼ ବିଶେଷତ୍ୱ ଯେ ଯେଉଁମାନେ ପର୍ବରେ ମିଶିଥାନ୍ତି ସେମାନେ ଘରକୁ ପ୍ରବେଶ କରନ୍ତି ନାହିଁ କି ସହବାସ କରନ୍ତି ନାହିଁ । ଶେଷ ଦିନ ଖାକର ଘରେ ଥିବା ପୋଢ଼ (ଅଣ୍ଡିରା ମଇଁଷି)କୁ ଧରଣୀ ରାଣୀ ବା ମାଟି ଦେବତା ଉଦ୍ଦେଶ୍ୟରେ ବଳି ପକାଇଥାନ୍ତି । ସେହି ପୋଢ଼ର ମାଂସକୁ ଭୋଜିଭାତ କରି ଖାଇଥାନ୍ତି ଏବଂ ବାକିତକ ଶୁଷ୍କ ଜମିରେ ନେଇ ପୋତି ଦିଅନ୍ତି । ଏହି ସମୟରେ ଗୋଳମାଳ ଉପୁଜିବାର ଲକ୍ଷ୍ୟ କରାଯାଏ । କାରଣ ଏହି ମାଂସକୁ ଅନ୍ୟ ଗ୍ରାମର ଲୋକମାନେ ଚୋରାଇ ନେବାକୁ ଉଦ୍ୟମ କରିଥାନ୍ତି । ଯଦି ଏହା ଧରା ପଡ଼ିଯାଏ, ତେବେ ଗଣ୍ଡଗୋଳର ସୂତ୍ରପାତ ହୁଏ । କାରଣ ଏହାଦ୍ୱାରା ସେମାନଙ୍କର ମଙ୍ଗଳ ସବୁ ଅନ୍ୟ ଗ୍ରାମକୁ ଚାଲିଯାଏ ବୋଲି ତାଙ୍କର ଧାରଣା । ମୋଟାମୋଟି ଭାବେ ଏହି ପର୍ବ ଦ୍ୱାରା ଗ୍ରାମର ମଙ୍ଗଳ ଏବଂ କୃଷିର ଉନ୍ନତି ହୁଏ ବୋଲି ସେମାନେ ଦେବତାଙ୍କୁ ଅତୁଟ ବିଶ୍ୱାସ ରଖିଥାନ୍ତି ।

କେଡୁ ପର୍ବର ନିଷ୍ଠା ଓ ଅନ୍ଧ ବିଶ୍ୱାସକୁ ଲକ୍ଷ୍ୟ କଲେ କନ୍ଧ ସଂସ୍କୃତିର ଧର୍ମଭାବନା କେତେ ନିବିଡ଼ ଓ ଗଭୀରତମ ତାହା ସ୍ପଷ୍ଟ ଅନୁମେୟ ହୁଏ । ଗ୍ରାମର ଏକତା, ଶ୍ରଦ୍ଧା, ସ୍ନେହ ଓ ସୌହାର୍ଦ୍ଦ ମଧ୍ୟରେ କନ୍ଧ ଜାତି ବଞ୍ଚିବାକୁ ଭଲପାଏ । ସେମାନଙ୍କର ସରଳ ଓ ନିଷ୍କପଟ ହୃଦୟରେ ଈଶ୍ୱର ବିଶ୍ୱାସ ଭାବ ଯେ କେତେ ଦୃଢ଼ତର ତାହା ସେମାନଙ୍କର ସଂସ୍କୃତି କହେ ।

କାଳର କରାଳ ସ୍ରୋତରେ ସବୁ କ୍ରମେ ଲୋପ ପାଇବାରେ ଲାଗିଛି । ବହୁ ପ୍ରାଚୀନ ଏଇ କନ୍ଧ ସଂସ୍କୃତିର ପରମ୍ପରା ଏବେ ଧ୍ୱଂସ ହେବା ଉପରେ । ପଶୁବଳି ଏକ ଜଘନ୍ୟ ଅପରାଧ ବୋଲି ସରକାର ଆଇନ୍ ପ୍ରଣୟନ କରିବା ଫଳରେ ଆଉ କନ୍ଧ ବସ୍ତିରେ କେଡୁ ପର୍ବର ଚିହ୍ନ ବର୍ଣ୍ଣ ଦେଖିବାକୁ ମିଳେନି । ହୁଏତ ସମୟ ଆସିବ, ଯେତେବେଳେ କନ୍ଧଜାତିର ଉତ୍ତର ପୁରୁଷ ଗଣ ସ୍ୱପ୍ନରେ ସୁଦ୍ଧା ଏ ପର୍ବ କଥା ମନେ ପକାଇବେ ନାହିଁ । ସେ ଯାହା ହେଉନା କାହିଁକି ? କନ୍ଧମାନଙ୍କ ଭିତରେ ଯେଉଁ ସ୍ନେହ, ଶ୍ରଦ୍ଧା, ସମତା ଓ ଐକ୍ୟ ରହିଛି ; ତାହା ଯେପରି ଏକ ଉଚ୍ଚ ଆଦର୍ଶର ଦିଗ୍‌ଦର୍ଶନ ଦିଏ । ତାହାର ବିନଷ୍ଟ ନ ହେବାକୁ ଯତ୍ନଶୀଳ ହେବା ଉଚିତ୍ । ଶିକ୍ଷା ଓ ସଭ୍ୟତାର ବହୁପରରେ ଥିବା ଯେଉଁ ଜାତିର ଏ ମହାନଗୁଣ ବିଶ୍ୱମାନବବାଦର ବହୁ ଊର୍ଦ୍ଧ୍ୱରେ ; ଆଜି ସଭ୍ୟ ଶିକ୍ଷିତ କନ୍ଧ ସମାଜ ଯେପରି ସେହି ଉଚ୍ଚ ପରମ୍ପରାକୁ ଧ୍ୱଂସ ବିଧ୍ୱଂସ କରି ଭ୍ରାନ୍ତ ଭାବର ମହା ଚେତନାରୁ ବିପଥଗାମୀ ନ ହୁଏ, ତାହା ଚିନ୍ତା ଓ ଚେତନାର ବିଷୟ । କନ୍ଧ ସଂସ୍କୃତିର ଏଇ ପ୍ରାଚୀନ ପରମ୍ପରା ହୁଏତ ଆଉ କିଛି ବର୍ଷ ପରେ ସମ୍ପୂର୍ଣ୍ଣ ଲୋପ ପାଇଥିବ ଏବଂ କନ୍ଧଜାତି, ସମାଜର ଉନ୍ନତି ପାହାଚରେ ପଦାର୍ପଣ କରି ସାରିଥିବ । ସେତେବେଳେ ସେହି ପ୍ରାଚୀନ କନ୍ଧ ସଂସ୍କୃତି ଏକ ପୌରାଣିକ କଥାବସ୍ତୁ ପରି ରହିଯାଇଥିବ, କେଉଁ ଦେଖା ଯାଉ ନ ଥିବା ଉଚ୍ଚ ପାହାଡ଼ର ଅନ୍ଧ ଗୁମ୍ଫା ଭିତରେ......।

---

ସମ୍ପାଦକ, "ନେ କୁହୁନି",
ଗ୍ରା/ପୋ-ଫିରିଙ୍ଗିଆ,
ଜି-ଫୁଲବାଣୀ-୭୬୨୦୧୧ ।



ସୂଚନା ଓ ଲୋକ ସମ୍ପର୍କ ବିଭାଗର ଅଣଆନୁଷ୍ଠାନିକ ଉପଦେଷ୍ଟା କମିଟି ବୈଠକରେ ବିଭାଗୀୟ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ଆଲୋଚନା କରୁଛନ୍ତି । ବିଭାଗୀୟ ଶାସନ ସଚିବ ଶ୍ରୀ ସୁବାସ ପାଣି ଓ ନିର୍ଦ୍ଦେଶକ ଶ୍ରୀ ସୁରସେନ ଜେନା ଉକ୍ତ ବୈଠକରେ ଯୋଗଦାନ କରିଛନ୍ତି ।

# ନାରୀ ଓ ଆମ ସମାଜ

* ଶ୍ରୀମତୀ ଶୈଳବାଳା କର *

ନାରୀ ଓ ପୁରୁଷ ଈଶ୍ୱରଙ୍କର ଯୁଗଳ ସୃଷ୍ଟି । ଉଭୟେ ଉଭୟଙ୍କର ପରିପୂରକ । ଏକ ଭିନ୍ନ ଅନ୍ୟର ସୃଷ୍ଟି ଓ ସ୍ଥିତି ଅସମ୍ଭବ । ଯେତେବେଳେ ଆଦମ୍ ଲୁଗା ବୁଣୁଥିଲେ ଓ ଇଭ୍ ସୂତା କାଟୁଥିଲେ ଉଭୟେ ସମାନ ସମ୍ମାନ ଲାଭ କରୁଥିଲେ, କିନ୍ତୁ କାଳକ୍ରମେ କାହିଁକି ଓ କିପରି ଏହାର ବ୍ୟତିକ୍ରମ ହୋଇ ନାରୀର ସମ୍ମାନ ତଳକୁ ଖସିଗଲା ?

ଆମ ଦେଶରେ ଜନନୀ, ଜାୟା, ଭଗିନୀ ଭାବରେ ନାରୀମାନେ ବନ୍ଦିତା । ଯେତେବେଳେ ଦେବତାମାନେ ଖୁବ୍ ବିପଦରେ ପଡୁଥିଲେ, ସେତେବେଳେ ମଧ୍ୟ ସେମାନେ ଦୁର୍ଗା, କାଳୀ ପ୍ରଭୃତି ଦେବୀମାନଙ୍କର ଶରଣ ପଶୁଥିଲେ । ସଂସାରରେ ସବୁଠାରୁ ଅଧିକ ପ୍ରୟୋଜନୀୟ ବସ୍ତୁ ଧନ ଓ ବିଦ୍ୟା ଦାୟିତ୍ୱରେ ରହିଛନ୍ତି ଜନନୀ ଲକ୍ଷ୍ମୀ ଓ ମାତା ସରସ୍ୱତୀ । ତେଣୁ ନାରୀ ଅତି ପ୍ରାଚୀନ କାଳରୁ ସର୍ବୋଚ୍ଚ ସମ୍ମାନର ଅଧିକାରିଣୀ । ସିଦ୍ଧି ଓ ସାଧନା କ୍ଷେତ୍ରରେ ମଧ୍ୟ ନାରୀଶକ୍ତି ଅପରିହାର୍ଯ୍ୟ । ଦେବୀ ସାବିତ୍ରୀ ତାଙ୍କର ନିଷ୍ଠା ଓ ସାଧନା ବଳରେ ନିଜ ମୃତ ସ୍ୱାମୀଙ୍କ ଜୀବନ ରକ୍ଷା କରିବା ସଙ୍ଗେ ସଙ୍ଗେ ନିଜର ଅନ୍ଧ ଶ୍ୱଶୁରଙ୍କ ଚକ୍ଷୁ ଓ ରାଜ୍ୟ ଫେରାଇ ଆଣି ପାରିଥିଲେ । ସତୀ ସୀତାଙ୍କ ଅନୁପସ୍ଥିତିରେ ଶ୍ରୀରାମଚନ୍ଦ୍ରଙ୍କ ଅଶ୍ୱମେଧ ଯଜ୍ଞ ମଧ୍ୟ ଅସମ୍ପୂର୍ଣ୍ଣ ହୋଇ ଯାଉଥିବାରୁ ତାଙ୍କୁ ସୀତାଙ୍କ ସ୍ୱର୍ଣ୍ଣ ପ୍ରତିମା ନିର୍ମାଣ କରିବାକୁ ପଡ଼ିଥିଲା । ଏସବୁ ସତ୍ତ୍ୱେ କିପରି ଆମ ଦେଶରେ ବାଲ୍ୟ ବିବାହ, ସତୀଦାହ, କନ୍ୟାମାନଙ୍କୁ ଶିକ୍ଷିତା ନକରିବା ଓ ପରଦା ପ୍ରଭୃତି ହୀନ, ପ୍ରଥା ପ୍ରଚଳନ ଭଳି କୁସଂସ୍କାରମାନ ସ୍ଥାନ ପାଇଲା ତାହା ଚିନ୍ତା କରି ହେଉନାହିଁ ।

ଇଂରେଜ ଅମଳରେ ଉଇଲିୟମ୍ ବେଣ୍ଟିଙ୍କ୍ ପ୍ରଭୃତି ସହୃଦୟ ଗଭର୍ଣ୍ଣର ଜେନେରାଲ୍‌ମାନେ ଆମ ଦେଶରେ କୁସଂସ୍କାରମାନ ଦୂରକରି ସମସ୍ତଙ୍କୁ ଶିକ୍ଷିତ କରିବା ପାଇଁ ଉଦ୍ୟମ କରିଥିଲେ । ସମାଜ ସଂସ୍କାର କ୍ଷେତ୍ରରେ ରାଜା ରାମ୍‌ମୋହନ ରାୟ, ପଣ୍ଡିତ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ଦୟାନନ୍ଦ ସରସ୍ୱତୀ ପ୍ରଭୃତି ସେ ସମୟରେ କମ୍ ଚେଷ୍ଟା କରିନାହାନ୍ତି । ଫଳରେ ବାଲ୍ୟ ବିବାହ ନିବାରଣ, ବିଧବା ବିବାହ ପ୍ରଚଳନ, ନାରୀଶିକ୍ଷା ପ୍ରବର୍ତ୍ତନ, ସତୀଦାହ ଉଚ୍ଛେଦ ପ୍ରଭୃତି ସଂସ୍କାରମାନ ଅନେକ ପରିମାଣରେ ସମ୍ଭବ ହୋଇଥିଲା । ଅନେକ କନ୍ୟା ଜନ୍ମ ହେଲେ ପିତାମାତାଙ୍କ ଉପରେ ବୋଝ ହେବ ବୋଲି ଶିଶୁକନ୍ୟାମାନଙ୍କୁ ହତ୍ୟା କରୁଥିଲେ । ତାହା ମଧ୍ୟ ଧୀରେ ଧୀରେ ଲୋକେ ଶିକ୍ଷିତ ହେବା ଫଳରେ କମିଗଲା । ଏସବୁ ସମ୍ଭବ ହୋଇଛି କେବଳ ଉତ୍ସାହୀ ସମାଜ ସଂସ୍କାରକମାନଙ୍କ ଉଦ୍ୟମରୁ । ଅବଶ୍ୟ ରାଜଦଣ୍ଡର ଭୟ ଲୋକମାନଙ୍କୁ କମ୍ ପ୍ରଭାବିତ କରି ନାହିଁ । ସ୍ୱାଧୀନତା ପରେ ସରକାର ଏସବୁ କ୍ଷେତ୍ରରେ ଅନେକ କିଛି କରିଛନ୍ତି । ଫଳରେ ବାଲ୍ୟବିବାହ, ସତୀଦାହ, ଶିଶୁକନ୍ୟା ବଧ ପ୍ରଭୃତି ଆଉ ପ୍ରାୟ ନାହିଁ କହିଲେ ଚଳେ । ନାରୀ ଶିକ୍ଷାର ପ୍ରସାର ପାଇଁ ମଧ୍ୟ ଇଂରେଜ ଅମଳରେ ଯାହା ହୋଇଥିଲା ତାହାର ବହୁଗୁଣ ସ୍ୱାଧୀନତା ପରେ ସମ୍ଭବ ହୋଇଛି । ଆଜି ବାଳିକା ବିଦ୍ୟାଳୟ ଓ ମହିଳା ମହାବିଦ୍ୟାଳୟର ଆଉ ଅଭାବ ନାହିଁ । ସରକାର ଏହି ଅନୁଷ୍ଠାନମାନଙ୍କୁ ଅଗ୍ରାଧିକାର ଭିତ୍ତିରେ ଅର୍ଥ ସାହାଯ୍ୟ କରୁଛନ୍ତି । ବମ୍ବେର S. N. D. T. ମହିଳା ବିଶ୍ୱ-ବିଦ୍ୟାଳୟ ଓ ଅନେକ ମହିଳା ପଲିଟେକ୍‌ନିକ୍ ସ୍ଥାପିତ ହୋଇ ମହିଳାମାନଙ୍କୁ ଉଚ୍ଚ ଶିକ୍ଷା କ୍ଷେତ୍ରରେ ଯଥେଷ୍ଟ ଉତ୍ସାହ ଦିଆଯାଉଛି । ମୋଟ ଉପରେ କହିବାକୁ ଗଲେ ସରକାର ନାରୀ ଶିକ୍ଷାର ପ୍ରସାର ପାଇଁ ଅର୍ଥ ପଛଘୁଞ୍ଚା ଦେଉନାହାନ୍ତି । ଫଳରେ ନାରୀମାନେ ଶିକ୍ଷା କ୍ଷେତ୍ରରେ ଯଥେଷ୍ଟ ପରିମାଣରେ ଅଗ୍ରଗତି କରି ଚାଲିଛନ୍ତି ।

ପୂର୍ବେ ନାରୀମାନେ ପୈତୃକ ସମ୍ପତ୍ତି ଲାଭକରିବାରୁ ବଞ୍ଚିତ ହେଉଥିଲେ, ମାତ୍ର ସରକାର ତାହା ରଦ୍ଦ କରି ନାରୀମାନଙ୍କୁ ପୈତୃକ ସମ୍ପତ୍ତି ପ୍ରଦାନ ବ୍ୟବସ୍ଥା କରି ଅଛନ୍ତି । ଯୌତୁକ ନିବାରଣ ଆଇନ ବଳରେ ସେମାନଙ୍କୁ ଯୌତୁକ ପାଇଁ ନିର୍ଯ୍ୟାତିତା ହେବାକୁ ପଡୁନାହିଁ । ପଞ୍ଚାୟତ ଓ ପୌର ସଭା ନିର୍ବାଚନ କ୍ଷେତ୍ରମାନଙ୍କରେ ମଧ୍ୟ ନାରୀମାନଙ୍କ ପାଇଁ ସ୍ଥାନ ସଂରକ୍ଷିତ ହୋଇଛି । ଆଉ ଓଡ଼ିଶା ସରକାରଙ୍କ ଦ୍ୱାରା ଚାକିରୀ କ୍ଷେତ୍ରରେ ମଧ୍ୟ ନାରୀମାନଙ୍କ ପାଇଁ ୩୦% ଭାଗ ସ୍ଥାନ ସଂରକ୍ଷିତ ହୋଇଛି । ନିକଟରେ ଦିଲ୍ଲୀରେ ତିନିସ୍ତରୀୟ ପଞ୍ଚାୟତ ନିର୍ବାଚନ କ୍ଷେତ୍ରରେ ମହିଳାମାନଙ୍କ ପାଇଁ ୫୦% ଭାଗ ସ୍ଥାନ ଦାବୀ ହୋଇଛି । ମହିଳାମାନଙ୍କ ପାଇଁ ପ୍ରଧାନମନ୍ତ୍ରୀ ଡାକଘର ସଞ୍ଚୟ କ୍ଷେତ୍ରରେ ଉତ୍ସାହିତ କରିବା ପାଇଁ ଯୋଜନା କରିଛନ୍ତି । ନାରୀମାନଙ୍କ ସୁବିଧା, ଅସୁବିଧା ବୁଝିବା ପାଇଁ ରାଷ୍ଟ୍ର ଓ ରାଜ୍ୟ ମହିଳା କମିଶନ୍‌ମାନ ମଧ୍ୟ ପ୍ରତିଷ୍ଠା କରାଯାଇଛି । ତେଣୁ ନାରୀମାନଙ୍କୁ ସରକାର ଅବହେଳା କରିଛନ୍ତି ବୋଲି ଆଉ କହି ହେବନି । କେବଳ ମହିଳାମାନଙ୍କ ଦ୍ୱାରା ପରିଚାଳିତ ପୋଲିସ ଥାନା ଓ ବ୍ୟାଙ୍କ୍ ଶାଖା ମଧ୍ୟ ଅନେକ ସ୍ଥାନରେ ସ୍ଥାପିତ ହୋଇଛି । କର୍ମଜୀବି ମହିଳାମାନଙ୍କ ପାଇଁ 'କର୍ମଜୀବି ମହିଳା ନିବାସ' ସରକାର ଅନେକ ସହରରେ ସ୍ଥାପନ କରିଛନ୍ତି । ଏକାଧିକ ସ୍ତ୍ରୀର ସ୍ୱାମୀଙ୍କୁ ସରକାରୀ ଚାକିରି ନ ଦେବା ପାଇଁ ମଧ୍ୟ ବ୍ୟବସ୍ଥା ହୋଇଛି ।

ମାତ୍ର ସରକାରଙ୍କର ଆନ୍ତରିକତା ସତ୍ତ୍ୱେ ନାରୀମାନେ ଆଜି ମଧ୍ୟ ଆମ ଦେଶରେ ସର୍ବତ୍ର ନିର୍ଯ୍ୟାତିତା । ନାରୀ ଧର୍ଷଣ ସମ୍ବାଦ ପ୍ରାୟ ପ୍ରତିଦିନ ସମ୍ବାଦ ପତ୍ରମାନଙ୍କରେ ଦେଖିବାକୁ ମିଳୁଛି । ଯୌତୁକ ପାଇଁ ବଧୂ ହତ୍ୟା ପ୍ରାୟ ପ୍ରତିଦିନର ଘଟଣା । ପ୍ରାଥମିକ ଶିକ୍ଷା ବାଧ୍ୟତାମୂଳକ ହୋଇ ନଥିବାରୁ ଅନେକ ଝିଅ ବିଦ୍ୟାଳୟକୁ ଯାଉ ନାହାନ୍ତି । ପୈତୃକ ସମ୍ପତ୍ତି ଲାଭ ଦିଗରେ ଆଇନଗତ ବ୍ୟବସ୍ଥା ସରକାର କରିଥିଲେ ହେଁ କେତେଜଣ ନାରୀ ତାହା ଲାଭ କରୁଛନ୍ତି ? ଅନେକ ନିଃସ୍ୱ ରମଣୀ ଭାଇମାନଙ୍କଠାରୁ ପୈତୃକ ସମ୍ପତ୍ତି ତ ଦୂରର କଥା ସାମାନ୍ୟ ଅନୁଗ୍ରହରୁ ମଧ୍ୟ ବଞ୍ଚିତା ହେଉଛନ୍ତି । ଅନେକ କ୍ଷେତ୍ରରେ ପିତାମାତା ପୁତ୍ର ସନ୍ତାନମାନଙ୍କ ଅପେକ୍ଷା କନ୍ୟାମାନଙ୍କ ପ୍ରତି ଯତ୍ନ ବା ଆଗ୍ରହ ପ୍ରଦର୍ଶନ ନ କରିବା ପରିଲକ୍ଷିତ ହେଉଛି । ବାଳିକା ବିଦ୍ୟାଳୟ ଓ ମହିଳା ମହାବିଦ୍ୟାଳୟମାନଙ୍କରେ କେବଳ ମହିଳା ଶିକ୍ଷୟିତ୍ରୀ ଓ କର୍ମଚାରୀମାନଙ୍କ ନିଯୁକ୍ତି ଦିଆଯାଇଛି । ଦୁଃଖର କଥା ଯେ ଭୋଜିଭାତ, ରୋଷଣି, ବାଦ୍ୟ ପ୍ରଭୃତିରେ ଅଯଥା ଖର୍ଚ୍ଚ କରି ଅନେକ ଶିକ୍ଷିତ ଯୁବକ ଗରିବ କନ୍ୟାପିତାମାନଙ୍କୁ ସେଥି ପାଇଁ ଅର୍ଥ ଦାବୀ କରୁଛନ୍ତି । ଏସବୁ କେବଳ ସରକାରଙ୍କ ଦ୍ୱାରା ବନ୍ଦ ହୋଇ ପାରିବ ନାହିଁ । ଏଥି ପାଇଁ ପ୍ରବଳ ଜନମତ ଆବଶ୍ୟକ । ଧର୍ଷଣ ଓ ବଧୂ ହତ୍ୟା ପ୍ରଭୃତି କ୍ରୁର କର୍ମରେ ଅଭିଯୁକ୍ତ ବ୍ୟକ୍ତିମାନେ ଯେପରି ତୁରନ୍ତ ଶାସ୍ତି ଲାଭ କରିବେ ତାହାର ବ୍ୟବସ୍ଥା ହେବା ଉଚିତ । କେହି ଏହି ମହାପାପରୁ ଖସିଯିବା ଦେଶ ପକ୍ଷରେ ହିତକର ନୁହେଁ ।

ଇଂରେଜ ସରକାର ଆମମାନଙ୍କୁ ନିତାନ୍ତ ଅବହେଳିତ ଅବସ୍ଥାରେ ରଖିଥିଲେ । ସ୍ୱାଧୀନତା ପରେ ଆମ ଜାତୀୟ ସରକାର ମହିଳା ତଥା ଅନ୍ୟମାନଙ୍କ ଉନ୍ନତି ପାଇଁ ନିଶ୍ଚୟ ସବୁପ୍ରକାର ଉଦ୍ୟମ କରୁଛନ୍ତି । କିନ୍ତୁ ଆମେ ସବୁକିଛି ପାଇଁ କେବଳ ସରକାରଙ୍କ ଉପରେ ନିର୍ଭର କଲେ ଚଳିବ ନାହିଁ । ନାରୀମାନଙ୍କର ସବୁ ସମସ୍ୟାର ସମାଧାନ ପାଇଁ ଦେଶର ପ୍ରତ୍ୟେକ ନାଗରିକ ସହୃଦୟତାର ସହିତ ସରକାରଙ୍କ ସହିତ ସହଯୋଗ କରିବା ଉଚିତ । ଯାହା ଫଳରେ ନାରୀ ନିର୍ଯ୍ୟାତନା ଆଦୌ ରହିବ ନାହିଁ । ପ୍ରତି ରାଜ୍ୟରେ S. N. D. T. ମହିଳା ବିଶ୍ୱବିଦ୍ୟାଳୟ ପରି ଅନ୍ତତଃ ଗୋଟିଏ ଲେଖାଏଁ ମହିଳା ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବା ଉଚିତ ଏବଂ ପ୍ରତ୍ୟେକ ମହିଳା ତାଙ୍କର ଶିକ୍ଷା ଶେଷ ପର୍ଯ୍ୟନ୍ତ ସରକାରୀ ଖର୍ଚ୍ଚରେ ପଢ଼ିବା ସୁବିଧା ପାଇବା ବାଞ୍ଛନୀୟ ।

---

ଅସିଷ୍ଟାଣ୍ଟ ଲାଇବ୍ରେରୀଆନ୍,
ରାଜେନ୍ଦ୍ର ମହାବିଦ୍ୟାଳୟ,
ବଲାଙ୍ଗୀର-୭୬୭୦୦୨ ।



**ଜଗତସିଂହପୁରଠାରେ ବନ୍ୟା କ୍ଷତିଗ୍ରସ୍ତ ଲୋକମାନଙ୍କ ପାଇଁ ସରକାରଙ୍କ ଦ୍ୱାରା** ଖୋଲାଯାଇଥିବା ଏକ ମାଗଣା ଭୋଜନ କେନ୍ଦ୍ର ।

# କବି ଗଙ୍ଗାଧର ଓ ତାଙ୍କ କାବ୍ୟକୃତି

* ଶ୍ରୀ ଦେବେନ୍ଦ୍ର କୁମାର ବେହେରା *

"ବରପାଲି ଦେଶେ ଅଛଇ ଗଙ୍ଗାଧର ମେହର
ତା'ରି କବିତା ପଢ଼ିଅଛି ଢେର ଢେର
କବିତାଗୁଡ଼ିକ ପଢ଼ି ମନମାନି ଯାଏ
ଆଉ ସେ ଲେଖୁବ ବୋଲି ବାଟ ଚାହିଁଥାଏ ।"

ନିଜର କଣ୍ଟକିତ ଜୀବନ ପଥରେ ଗଙ୍ଗାଧର କ୍ଷତ ବିକ୍ଷତ । କିନ୍ତୁ ତାଙ୍କର ବୀଣା ମୌନ ନଥିଲା । ତାଙ୍କର ବୀଣାର ତାରରୁ ଦିନେ ଯେଉଁ ମଧୁର ସ୍ୱର ଜାଗି ଉଠୁଥିଲା ସେ ସ୍ୱର ଏବେ ବି ହଜି ଯାଇନାହିଁ ସମୀରର ମନ୍ଦିର୍ରେ, ସ୍ରୋତସ୍ୱିନୀର କଳ କଲ୍ଲୋଳରେ, ପକ୍ଷୀର କୂଜନରେ ସ୍ୱର ବଞ୍ଚି ରହିଛି । ତାହା ଶ୍ରୁତି ପୂତ ହୋଇ ସୁଧା ଚିର ନୂତନ ଓ ଚିର ମାଧୁର୍ଯ୍ୟପୂର୍ଣ୍ଣ । ତାଙ୍କର ସେହି ସ୍ୱର ଜୀବନକୁ କର୍ମ ମୁଖର କରିବା ପାଇଁ ତଥା ଦେଶ ଓ ଜାତିର କଲ୍ୟାଣ ପାଇଁ ସଚେତନ ହେବା ସକାଶେ ଦେଇଛି ଅକ୍ଷୟ ଓ ଅବ୍ୟୟ ପ୍ରେରଣା ।

କବି ଗଙ୍ଗାଧରଙ୍କ କବି ପ୍ରତିଭାର ପରିଚୟ ଦେଶବାସୀ ଯେ ଉତ୍ତମ ଭାବରେ ପାଇ ପାରିଛନ୍ତି ଏହା ନିଃସନ୍ଦେହ । ତାଙ୍କ କାବ୍ୟ କବିତା ମଧ୍ୟରେ ଯେଉଁ ଅମର ନିଃସ୍ୟନ୍ଦିନୀ ଧାରା ପ୍ରବାହିତ ତାହା ଏ ଦେଶର ରସପିପାସୁ ପାଠକଗଣ ନିଶ୍ଚିତ ଉପଲବ୍ଧି କରିଅଛନ୍ତି । ଆଧୁନିକ ଓଡ଼ିଆ ସାହିତ୍ୟରେ ଗଙ୍ଗାଧର କାବ୍ୟ ସାହିତ୍ୟକୁ ପ୍ରକୃଷ୍ଟ ରୂପରେ ଆଧୁନିକ ଛାଞ୍ଚରେ ଗଢ଼ିବାକୁ ଯାଇ ସେ ଯେଉଁ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଅଛନ୍ତି ତାହା ବିସ୍ମୃତ ହେବାର ନୁହେଁ । ତାଙ୍କର କାବ୍ୟାବର୍ଶଗୁଡ଼ିକ ଆଧୁନିକ ଯୁଗର ବହୁ କବିଙ୍କ ଦ୍ୱାରା ଅନୁସୃତ ହେଉଅଛି ।

ଗଙ୍ଗାଧରଙ୍କ କାବ୍ୟକୃତି ଅନୁଶୀଳନ କଲେ ମନେହୁଏ ସତେ ଯେପରି ଓଡ଼ିଆ ସାହିତ୍ୟରେ ସେ ଏକ ସନ୍ଧିକ୍ଷଣ । ସେ ସମ୍ପୂର୍ଣ୍ଣ ଭାବରେ ପ୍ରାଚୀନ ସାହିତ୍ୟର ଅନୁସରଣ କରିନାହାନ୍ତି କିନ୍ତୁ ଏହି ସନ୍ଧିକ୍ଷଣରେ ତାଙ୍କର ସୃଷ୍ଟି ମଳିନ ପଡ଼ି ନାହିଁ । ପ୍ରାଚୀନ ଓ ଆଧୁନିକତା ମଧ୍ୟରେ ଯାହା କିଛି ଲୋଭନୀୟ ବୋଲି ମନେ କରିଛନ୍ତି ଗଙ୍ଗାଧର ସେ ସବୁକୁ ସାଦରେ ଗ୍ରହଣ କରି ନେଇଛନ୍ତି । ଏଣୁ ଗଙ୍ଗାଧରଙ୍କ କୃତିରେ ଆମେ ଦେଖିବାକୁ ପାଉ ପ୍ରାଚୀନତା ଓ ଆଧୁନିକତାର ଏକ ମନୋଜ୍ଞ ସମ୍ମେଳନ, ପାଣ୍ଡିତ୍ୟ ଓ କବିତ୍ୱର ଅପୂର୍ବ ସମନ୍ୱୟ । ଓଡ଼ିଆ କବି ଓ ସଂସ୍କୃତ କବିମାନଙ୍କର ପୂତ ସାହିତ୍ୟ କାନନରେ ପୂର୍ଣ୍ଣ ପ୍ରାଣରେ ଭ୍ରମଣ କରି ସେଥିରେ ସେ ଚିରନ୍ତନ ସୌନ୍ଦର୍ଯ୍ୟର ସନ୍ଧାନ ପାଇଅଛନ୍ତି । କେବଳ ତାକୁ ହିଁ ଗ୍ରହଣ କରି ଆଧୁନିକ ଯୁଗର ରୁଚି–ସମ୍ମତ ଭଙ୍ଗୀରେ ପ୍ରକାଶ କରିଅଛନ୍ତି ।

ଗଙ୍ଗାଧର ଜଣେ ଜାତୀୟ କବି । ତାଙ୍କ କବିତାର ଜାତୀୟତାବୋଧ କେତେବେଳେ ଅନ୍ତଃ–ସଲିଳ–ଫଲ୍‌ଗୁ ପରି ପ୍ରବାହିତ ପୁଣି କେତେବେଳେ କୂଳ ପ୍ଲାବନୀ ଜାହ୍ନବୀ ପରି ଓଡ଼ିଆ ଜାତିର ପ୍ରାଣେ ପ୍ରାଣେ ମହା ପ୍ରେରଣାର ଉତ୍ସ ଖୋଲିବା ପାଇଁ ଚିର ଚଞ୍ଚଳ । ଏଠାରେ ଏକ ପଂକ୍ତି ଉଦ୍ଧାର କରାଯାଇପାରେ–

"ମାତୃଭୂମି ମାତୃ ଭାଷାରେ ମମତା
ଯା ହୃଦେ ଜନମି ନାହିଁ ।
ତାକୁ ଯଦି ଜ୍ଞାନି ଗଣରେ ଗଣିବା
ଅଜ୍ଞାନ ରହିବେ କାହିଁ ?"

ଓଡ଼ିଆ ଭାଷା ଉପରେ କିପରି ଆକ୍ରମଣ ଚାଲିଥିଲା, ସେ ଗଙ୍ଗାଧର ଭଲ ଭାବରେ ଉପଲବ୍ଧି କରିଥିଲେ । ତାଙ୍କର ପ୍ରାଣରେ ତେଣୁ ଦେଖା ଦେଇଥିଲା ଅକୁହା ବେଦନାର ପ୍ରାବେ "ଉତ୍କଳ ଲକ୍ଷ୍ମୀ" ତା'ରି ଫଳ । ଦେଶବାସୀଙ୍କର ପ୍ରାଣେ ପ୍ରାଣେ ଜାତୀୟ ଭାବର ମହିମାନ୍ୱିତ ସ୍ପନ୍ଦନ ପାଇଁ ଗଙ୍ଗାଧରଙ୍କ ପ୍ରୟାସ ଅବିସ୍ମରଣୀୟ ।

୧୯୦୩ ମସିହାରେ କବି "କିଚକ ବଧ" ରଚନା କରି ସାରିବା ପରେ ତାଙ୍କର ଲେଖନୀ ହଠାତ୍ ବନ୍ଦ ହୋଇ ଯାଇଥିଲା । ପୁଣି ଦାରିଦ୍ର୍ୟ ଓ ପାରିବାରିକ ଅଶାନ୍ତିର କଣ୍ଟକିତ ପଥରେ କ୍ଷତ ବିକ୍ଷତ ହୋଇ ବାଣୀ ଆରାଧନା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରି ପାରିପାରି ନଥିଲେ । ନିଜ ଦୁଃଖ ଦୈନ୍ୟକୁ କେତେ ପଥର ପରି ଚାପି ରଖି ସେ ସାହିତ୍ୟ ସାଧନା କରିଅଛନ୍ତି । ସେଥିପାଇଁ ସେ ଗାଇ ଉଠିଥିଲେ–

"ଦାରିଦ୍ର୍ୟତା ପଙ୍କେ ପୂର୍ଣ୍ଣ ମୋ ଜୀବନ ସର
ଜଞ୍ଜାଳ–ଜଳଦ ଜଳ-ଆବିଳ ଉଦର ।"

ତାଙ୍କ ଜୀବନ କାଳ ମଧ୍ୟରେ ବ୍ରଜମୋହନ ବାବୁଙ୍କର ଉଦୟ ଥିଲା ତାରା ସଦୃଶ ନୂତନ ପ୍ରଭାତର ଶୁଭ ଇଙ୍ଗିତ ଦେଇ । ବ୍ରଜମୋହନଙ୍କର ବାରମ୍ବାର ଅନୁରୋଧ ଓ ଉତ୍ସାହ ପ୍ରଦାନ ଫଳରେ ଗଙ୍ଗାଧରଙ୍କ ବଳିଷ୍ଠ ଲେଖନୀ ସୃଜନ ସ୍ୱପ୍ନରେ ଅଧିକ ମୁଖର ହୋଇ ଉଠିଲା । କବିତା କଲ୍ଲୋଳ, ପ୍ରଣୟ ବଲ୍ଲରୀ, ଅଯୋଧ୍ୟା ଦୃଶ୍ୟ, ଉତ୍କଳ ଲକ୍ଷ୍ମୀ, ତପସ୍ୱିନୀ, ଇନ୍ଦୁମତୀ, ଅର୍ଘ୍ୟଥାଳୀ ଇତ୍ୟାଦି ତା'ରି ଫଳ ।

କବି ଗଙ୍ଗାଧରଙ୍କ ପ୍ରକୃତି କବି ଭାବରେ ଗ୍ରହଣ କରାଯାଇଛି । ସେ ଅନ୍ତଃ ପ୍ରକୃତି ସହିତ ବହିଃ ପ୍ରକୃତିର ଅପୂର୍ବ ସମନ୍ୱୟ ସୃଷ୍ଟି କରିଛନ୍ତି ତାଙ୍କ କାବ୍ୟ କବିତାରେ । ତାଙ୍କ ପ୍ରକୃତି ଜୀବନ୍ତ ଏବଂ ମାନବ ପରି କଥା କହିଛି । ମଣିଷର ଦୁଃଖରେ ସେ ସମବେଦନା ଜ୍ଞାପନ କରିଛି । ତାଙ୍କର ପ୍ରଥମ ପ୍ରକାଶିତ କାବ୍ୟ ହେଲା "ଇନ୍ଦୁମତୀ" । ଏହି କାବ୍ୟରେ ଧର୍ମ ଓ ସତୀତ୍ୱ ପ୍ରତିଷ୍ଠିତ । "ଇନ୍ଦୁମତୀ"ର କବିଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ଲେଖେ କବି ନନ୍ଦକିଶୋର ବଳ ଯେଉଁ କବିତାଟି ରଚନା କରିଥିଲେ ଏହି ଉଦ୍ଧୃତାଂଶଟି ତାରି ଫଳ–

"ଦରିଦ୍ରତା ନୁହେଁ କବି ପ୍ରତିଭା ନାଶକ
ବିଦ୍ଧ ଶିଳା ହେଲ ଖାଣ୍ଟି ସୁନା ପରୀକ୍ଷକ
ପଢ଼ି ସୁନ୍ଦର କାବ୍ୟ ଦେଖି ପ୍ରିୟ କବି
ସମୁଜ୍ଜ୍ୱଳ କର ମାତୃଭୂମି ମୁଖ ଛବି ।"

"କୀଚକ ବଧ" କାବ୍ୟ ତାଙ୍କର ଅନ୍ୟ ଏକ କୃତି । ଏଥିରେ ରହିଛି ବିରାଟ ନଗରର ବର୍ଣ୍ଣନା, ଋତୁ ବର୍ଣ୍ଣନା, ବନବର୍ଣ୍ଣନା ଅତ୍ୟନ୍ତ ମନମୁଗ୍ଧକର । ଏଥିରେ ରହିଛି ଅନ୍ତଃ ପ୍ରକୃତି ଓ ବହିଃ ପ୍ରକୃତିର ସମନ୍ୱୟ–

"ଅନନ୍ତ ମସ୍ତକେ ଯେହ୍ନେ ମଣି ସମୁଜ୍ଜ୍ୱଳ
ଯମୁନା ବକ୍ଷରେ କି ଶ୍ୱେତ ଶତଦଳ ।"

ସେହିପରି ବିରାଟ ନଗରୀର ବର୍ଣ୍ଣନା କରି କବି ଲେଖିଛନ୍ତି–

"ବିରାଟ ନଗରୀ ମହି ମଧ୍ୟେ ମନୋହର
ବିଶ୍ୱ ମନୋରମା ରମା ଦେବୀ କେଳି ଘର ।"

ଗଙ୍ଗାଧରଙ୍କ କାବ୍ୟଗୁଡ଼ିକୁ ପାଠ କଲେ ଜଣାଯାଏ ସତେ ଯେପରି ଭାରତୀୟ ନାରୀର ଉଚ୍ଚ ଆଦର୍ଶକୁ ପ୍ରକଟିତ କରିବା ଥିଲା ତାଙ୍କର ପ୍ରଧାନ ଲକ୍ଷ୍ୟ । ତେଣୁ କୀଚକ ବଧ କାବ୍ୟରେ ଫୁଟାଇଛନ୍ତି ସୈରିନ୍ଧ୍ରୀର ପତିବ୍ରତା ଓ ନିର୍ଭୀକତା–

"କୁସୁମ ତୋଳିବା ଦୂରେ ଥାଉ
କାହା କୁସୁମ ଲୋଭର ବନେ
ପରବଶ କଥା ଶରବେ ଜାଣିଲେ
ସଂଶୟ ତା'ର ଜୀବନେ ।"

ସେ ରୁଚିର କବି । ସେ ରୁଚି ସହିତ କୌଣସି ପ୍ରସଙ୍ଗ ତାଙ୍କ କବିତାରେ ସ୍ଥାନ ଦେଇ ନାହାନ୍ତି । ସେ "କୀଚକ ବଧ" କାବ୍ୟରେ ଅଧର୍ମର ଜ୍ୱଳନ୍ତ ଅଗ୍ନି ମଧ୍ୟରେ ସତୀତ୍ୱ ଓ ଧର୍ମକୁ ନିକ୍ଷେପ କରି ଧର୍ମକୁ ଶୁଦ୍ଧ ସୁବର୍ଣ୍ଣ ପରି ଜାଜ୍ୱଲ୍ୟମାନ କରିପାରିଛନ୍ତି ।

'ପ୍ରଣୟ ବଲ୍ଲରୀ' ମଧ୍ୟ ତାଙ୍କର ଅନ୍ୟ ଏକ କାବ୍ୟ । ଏଥିରେ ରହିଛି ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କର ଅନାବିଳ ପ୍ରେମ । ଏହା ପାଠକଙ୍କର ମନକୁ ସ୍ୱତଃ ଆକର୍ଷଣ କରେ । ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କୁ କେନ୍ଦ୍ର କରି "ପ୍ରଣୟ ବଲ୍ଲରୀ" କାବ୍ୟ ରଚିତ । ତପସ୍ୱିନୀ ତାଙ୍କ କବି ପ୍ରତିଭାର ଶ୍ରେଷ୍ଠ ନିଦର୍ଶନ–

"ମଙ୍ଗଳେ ଅଇଲା ଉଷା ବିକଚ ରାଜୀବ ଭୂଷା
ଜାନକୀ ଦର୍ଶନ ତୃଷା ହୃଦୟେ ବହି
କର ପଲ୍ଲବେ ନିହାର ମୁକ୍ତା ଧରି ଉପହାର
ସତୀଙ୍କ ବାସ ବାହାର ପ୍ରାଙ୍ଗଣେ ରହି
କଳ କଣ୍ଠ କଣ୍ଠେ କହିଲା
ଦରଶନ ଦିଅ ସତୀ ରାତି ପାହିଲା ।"

ପିଲା ବୟସରେ ପୁଲକିତ ହୋଇ କେତେଥର ଯେ ଗାଁ ଦାଣ୍ଡରେ ଗାଇ ବୁଲିଛି ତା'ର ଇୟତା ନାହିଁ । ଆଉ ଆଜି ଏହାର ଅନୁଶୀଳନ କରିବାକୁ ଯାଇ ଯେଉଁ ଅନ୍ତଃ ସୌନ୍ଦର୍ଯ୍ୟର ସନ୍ଧାନ ପାଇଛି ତାହାର ପଟାନ୍ତର ନାହିଁ । କବି ଗଙ୍ଗାଧରଙ୍କ ଅସାଧାରଣ କବି ପ୍ରତିଭାର ବିକଚ ଅଭିବ୍ୟକ୍ତ ହେଉଛି ଏହି 'ତପସ୍ୱିନୀ', କବି ପ୍ରଥମେ ଏହି କାବ୍ୟରେ ବାଗ୍‌ ଦେବୀଙ୍କୁ ଆରାଧନା କରି କାବ୍ୟଟିକୁ ଆରମ୍ଭ କରିଛନ୍ତି–

"କିଏ ଗୋ ତୁ ଜ୍ୟୋତିର୍ମୟୀ ଶୁଭ୍ର ଶୁଭ୍ର–ବେଶା
ଇନ୍ଦ୍ରନୀଳ–ଦ୍ୟୁତି–ଜିତ–ମନୋହର–କେଶା ।"

ତା'ପରେ ବିଷୟବସ୍ତୁର ଆରମ୍ଭ ହୋଇଛି ଅତି ନାଟକୀୟ ଭାବରେ । ଭାଗୀରଥୀ କୂଳରେ ପୂର୍ବ ଦିଗକୁ ଅନାଇ ଛିଡ଼ା ହୋଇଥିଲେ ପତି–ବିରହ–ବିଧୁରା–ନିର୍ବାସିତା–ଧ୍ୟାନରତା–ଜାନକୀ । ଆଖିରୁ ଝରିପଡ଼ୁଥିଲା ଶ୍ରାବଣର ବାରିଧାରା ଝରଝର ହୋଇ । କବିଙ୍କ ତପସ୍ୱିନୀ କରୁଣ ରସର ଏକ ଅଫୁରନ୍ତ ଉତ୍ସ । ଏଥିରେ ଅନ୍ୟାନ୍ୟ ରସ ଥିଲେ ହେଁ କରୁଣ ରସ ମୁଖ୍ୟ ସ୍ଥାନ ଗ୍ରହଣ କରିଛି । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କରୁଣ ରସର ଅବାରିତ ପ୍ରବାହ ସୃଷ୍ଟି ହୋଇଛି । ସୀତାଙ୍କର ଏହି କ୍ରନ୍ଦନ ଧ୍ୱନୀରେ ସମଗ୍ର ପ୍ରକୃତି ରାଜ୍ୟ ସୀତାଙ୍କର ଦୁଃଖରେ ସମବେଦନା ପ୍ରକାଶ କରିଛି–

କ୍ଷାନ୍ତିଗଲା ଜାହ୍ନବୀର ତରଙ୍ଗ ଆବଳି
ବନ୍ଦ ହୋଇଗଲା ବନେ ବିହଙ୍ଗ କାକଳି
ନ ହଲିଲା ପାଦପର ଗୋଟିଏ ପତର
ନ ଚଳିଲା ଲିଳା–ଶିଳା–ବଲ୍ଲୀ–କଳେବର ।"

ରାମଚନ୍ଦ୍ର ସୀତାଙ୍କୁ ନିର୍ବାସନ ଦଣ୍ଡ ଦେଇ ସ୍ଥିର ହୋଇ ରହିପାରି ନାହାନ୍ତି । ତାଙ୍କ ନୟନରୁ ଝରି ଆସିଛି ଅବାରିତ ଲୋତକର ଧାରା । ସେ କହିଛନ୍ତି–

"ନୟନ ଯୁଗଳ କାହିଁକି ବିକଳ
ହୋଇ ଛାଡୁ ଅଛି ଜଳ
ଶୁଣି ଶରଲେ ସର କମଳିନୀ ମୋର
ହୋଇଯିବ ଟଳ ମଳ ।"

ନିର୍ବାସନ ଦଣ୍ଡ ଲାଭ କରି ସୀତା ଯେପରି ଲୋତକ ବିସର୍ଜନ କରିଛନ୍ତି, ନିର୍ବାସନ ଦେଇ ରାମଚନ୍ଦ୍ର ମଧ୍ୟ ସେହିପରି ଗଭୀର ଦୁଃଖ

ଅନୁଭବ କରିଛନ୍ତି । ଏହି କାବ୍ୟରେ ପ୍ରକୃତି କବି ଗଙ୍ଗାଧର ଉଷାର ଏକ କମନୀୟ ବର୍ଣ୍ଣନା ଦେଇଛନ୍ତି–

"ସମୀର ସଙ୍ଗୀତ ଗାଏଁ ଭ୍ରମର ବୀଣା ବଜାଏ
ସୁରଭି ନର୍ତ୍ତନେ ଥାଏ ଉଷା ନିର୍ଦ୍ଦେଶେ,
କୁଆଟୁଆ ହୋଇ ଭାଟ ଆରମ୍ଭିଲା ସ୍ତବ ପାଠ
କଳିଙ୍ଗ ଅଇଲା ପାଟ–ମାଗଧ ବେଶେ
ଲଳିତ ମଧୁରେ କହିଲା
ଉଠ ସତୀ, ରାଜରାଣୀ ରାତି ପାହିଲା ।"

ଆହୁରି ମଧ୍ୟ କବି ସତୀ ସୀତାଙ୍କର ପତିବ୍ରତ୍ୟକୁ ପ୍ରତିବାଦନ କରି ସୀତାଙ୍କ ପତି ଭକ୍ତିର ଜ୍ୱଳନ୍ତ ନିଦର୍ଶନ ଦେଇଛନ୍ତି–

"ମୋ ତନୁ ଦଗଧ ହେଲେ ହେବ ତ ଖାର
ତାହାକୁ କରାଇବ ପାଦପେ ସାର
ସେ ତରୁ କାଷ୍ଠ ନେଇ ବର୍ଦ୍ଧକି ହସ୍ତେ
କରାଇ ଦେବ ପ୍ରଭୁ ପାଦୁକା ମୋତେ ।"

ଏହି ପରି ଭାବରେ ତାଙ୍କ ପ୍ରତ୍ୟେକ କାବ୍ୟ କବିତାରେ ରହି... ଅଫୁରନ୍ତ ଆକର୍ଷଣୀୟ ପଂକ୍ତି । ଯାହାକି ପାଠକଙ୍କ ମନକୁ ପ୍ରବ... ଆକର୍ଷଣ କରାଏ ।

୧୯୨୪ ମସିହା ଏପ୍ରିଲ୍ ୪ ତାରିଖ ଦିନ କବି ଗଙ୍ଗାଧ... ମୃତ୍ୟୁବରଣ କରିଥିଲେ । ତାଙ୍କର ମାଟିର ଶରୀର ଉତ୍କଳର ପବି... ମାଟିରେ ମିଶିଯାଇଛି ସତ୍ୟ, କିନ୍ତୁ ଓଡ଼ିଆ ସାହିତ୍ୟରେ ଓ ଓଡ଼ି... ଜାତୀୟ ଜୀବନରେ ସେ ଚିର-ଅମର ।

ଓଡ଼ିଆ ବିଭାଗ,
ସରକାରୀ ମହାବିଦ୍ୟାଳୟ,
ଅନୁଗୋଳ ।



ଜଗତସିଂହପୁର ଜିଲ୍ଲା ଦେବୀ ନଦୀ ବନ୍ଧରେ ହୋଇଥିବା ଘଡ଼ିମୁହଁ ଘାଇ ।

# ନବଜାତ ଶିଶୁର କାମଳ ରୋଗ

* ଡା: କଲ୍ୟାଣୀ ଦାଶ *

'ଜଣ୍ଡିସ୍' ବା କାମଳ ରୋଗ ପ୍ରାୟ ଅଧିକାଂଶ ଲୋକଙ୍କୁ ଜୀବନରେ କେବେ ଥରେ ଆକ୍ରାନ୍ତ କରିଥାଏ । ମାତ୍ର ଏହା କୌଣସି ରୋଗ ନୁହେଁ, ବରଂ ଏହା ବିଭିନ୍ନ ରୋଗର ଲକ୍ଷଣ ଅଟେ । ରକ୍ତରେ ପୀତବର୍ଣ୍ଣର କଣିକା "ବିଲିରୁବିନ" ବା କୋ ୧ Pigmentର ପରିମାଣ ବୃଦ୍ଧି ପାଇଲେ 'ଜଣ୍ଡିସ' ବା କାମଳ ରୋଗ ହୋଇଛି ବୋଲି ଜଣାଯାଏ । ଏଥିରେ ଆଖିର ଶ୍ୱେତ ପଟଳ (Sclera) ଓ ଚର୍ମ ପୀତବର୍ଣ୍ଣ ଧାରଣ କରେ । ପରିସ୍ରା ଗାଢ଼ ହଳଦିଆ ବର୍ଣ୍ଣହୁଏ । ଚର୍ମ ଓ ଆଖି ଫିକା ହଳଦିଆରୁ ଗାଢ଼ ହଳଦିଆ କମଳାରଙ୍ଗ– ଏପରିକି ସବୁଜବର୍ଣ୍ଣ ହୁଏ । ସୁସ୍ଥ ଲୋକର ରକ୍ତରେ ୧୦୦ମିଲି ଲିଟର ପ୍ରତି ୦.୧–୧ ମି:ଗ୍ରା: ପରିମାଣର ବିଲିରୁବିନ ଥାଏ । ମାତ୍ର ଏହା ୨–୩ ମି:ଗ୍ରା: ହେଲେ ଜଣ୍ଡିସ୍ ହୋଇଥିବାର ଜଣାଯାଏ । ରକ୍ତରେ ଥିବା ଲୋହିତ ରକ୍ତ କଣିକାଗୁଡ଼ିକ ଯକୃତ (Liver)ରେ କ୍ଷୟପ୍ରାପ୍ତ ହୋଇ ବିଲିରୁବିନରେ ପରିଣତ ହୋଇଥାଏ । ତେଣୁ ମୁଖ୍ୟତଃ ଯକୃତ, ପିତ୍ତଥଳୀ ଓ ପିତ୍ତନଳୀର କୌଣସି ରୋଗହେଲେ ଜଣ୍ଡିସ ହୁଏ । ଏହା ବ୍ୟତୀତ ମଧୁରକୋଷ (Pancolas) ଓ ପିତ୍ତନଳୀକୁ ବାହାରୁ ଚାପ ପଡ଼ିଲେ ମଧ୍ୟ ଜଣ୍ଡିସ୍ ହୁଏ । ସେହିଭଳି ଅଧିକ ଲୋହିତ ରକ୍ତ କଣିକା କ୍ଷୟପ୍ରାପ୍ତ ହେଲେ ମଧ୍ୟ ବିଲିରୁବିନର ପରିମାଣ ବୃଦ୍ଧିପାଇ ଜଣ୍ଡିସ ହୁଏ । ଏତଦ୍‌ବ୍ୟତୀତ ଯେଉଁ ପିତ୍ତନଳୀରେ ପିତ୍ତ ଯକୃତରୁ ପିତ୍ତଥଳୀକୁ ଓ ସେଠାରୁ ଅନ୍ତନଳୀକୁ ଯାଇଥାଏ, ସେଥିରେ ପଥର ହେଲେ କିମ୍ବା ତାହା ଚିପି ହୋଇଗଲେ ଜଣ୍ଡିସ୍ ହୁଏ ।

ବୟସ୍କ ବ୍ୟକ୍ତିଙ୍କ ଅପେକ୍ଷା ନବଜାତ ଶିଶୁ ଜନ୍ମର ମାସେ ଭିତରେ ଅଧିକ ମାତ୍ରାରେ ଜଣ୍ଡିସ୍ ଦେଖା ଦେଇଥାଏ । ପୂର୍ଣ୍ଣମାସ ହେବା ପୂର୍ବରୁ ଯେଉଁ ଅପରିପକ୍ୱ ଶିଶୁମାନେ ଜନ୍ମ ନେଇଥାନ୍ତି, ସେମାନଙ୍କ ମଧ୍ୟରୁ ୮୦ଭା. ଜନ୍ମ ହେବାର ପ୍ରଥମ ସପ୍ତାହକ ମଧ୍ୟରେ ଜଣ୍ଡିସ୍ ଦ୍ୱାରା ଆକ୍ରାନ୍ତ ହୋଇଥାନ୍ତି । ମାତ୍ର ଏହି ସମୟ ମଧ୍ୟରେ ପୂର୍ଣ୍ଣମାସରେ ଜନ୍ମିଥିବା ଶିଶୁଙ୍କ ମଧ୍ୟରୁ ୬୦% ଏହି ରୋଗ ଭୋଗକରନ୍ତି ।

ସବୁ କ୍ଷେତ୍ରରେ ଜଣ୍ଡିସ୍ କୌଣସି ରୋଗ ଯୋଗୁଁ ହୋଇଛି ବୋଲି ଧରିନେବା ଠିକ୍ ନୁହେଁ । କାରଣ ଗର୍ଭାବସ୍ଥାରେ ଶିଶୁ ଶରୀରରେ ଥିବା ଅଧିକ ସଂଖ୍ୟକ ଲୋହିତରକ୍ତ କଣିକାଗୁଡ଼ିକ ଜନ୍ମର ୨–୩ ଦିନ ମଧ୍ୟରେ ଭାଙ୍ଗିଯାଇ ସାଧାରଣ ଶିଶୁଙ୍କ ଦେହରେ ମଧ୍ୟ ଜଣ୍ଡିସ୍ ହୁଏ । ଏହାକୁ ସାଧାରଣ କାମଳରୋଗ (Physiological Jaundice) କୁହାଯାଏ । ଏହାକୁ କୌଣସି ଚିକିତ୍ସା ନକଲେ ମଧ୍ୟ ଆପେ ସପ୍ତାହକ ମଧ୍ୟରେ ଭଲ ହୋଇଯାଏ । ଏଥିରେ ରକ୍ତରେ ବିଲିରୁବିନ ବା ପିତ୍ତକଣିକାର ପରିମାଣ ୮–୧୨ ମିଲିଗ୍ରାମ ହୋଇଥାଏ । ମାତ୍ର (Pathological Jaundice) ଅସ୍ୱାଭାବିକ କାମଳ ରୋଗରେ ବିଲିରୁବିନର ପରିମାଣ ୧୮–୨୦ ମି:ଗ୍ରା: ହୁଏ । ଫଳରେ ଶିଶୁର ସାଂଘାତିକ ଜଣ୍ଡିସ୍ ହୋଇ Kernicterus ବା ମସ୍ତିଷ୍କ କାମଳ ରୋଗ ହୋଇଯାଏ । ଏ ପ୍ରକାରର କାମଳ ରୋଗ ଶିଶୁ ଜନ୍ମର ମାତ୍ର ୨୪ ଘଣ୍ଟା ମଧ୍ୟରେ ଦେଖାଯାଏ । ମୁଖ୍ୟତଃ ଶିଶୁ ଅପରିପକ୍ୱ ଅବସ୍ଥାରେ ଜନ୍ମିଲେ (Prematurity), ରକ୍ତ ବିଷାକ୍ତ (Septicalmia) ହେଲେ, ଶିଶୁ ଶରୀରରେ ଅତ୍ୟଧିକ ରକ୍ତସ୍ରାବ ହେଲେ ଏ ପ୍ରକାରର ଜଣ୍ଡିସ୍ ହୁଏ । ଏହାବ୍ୟତୀତ ଯେଉଁ ମହିଳାଙ୍କର ରକ୍ତ ଗ୍ରୁପ୍ (Rh–Negative) ହୋଇ ଶିଶୁର ରକ୍ତ ଗ୍ରୁପ୍ (Rh–Positive) ହୁଏ, ସେ କ୍ଷେତ୍ରରେ ମଧ୍ୟ Erythroblastosis Foctalis ହୋଇ ଶିଶୁ ଶରୀରରେ ଅତ୍ୟଧିକ ପରିମାଣରେ ଲୋହିତ ରକ୍ତକଣିକାଗୁଡ଼ିକ କ୍ଷୟପ୍ରାପ୍ତ ହୋଇଥାନ୍ତି । ସେହିପରି Premature ଶିଶୁଙ୍କ ଶରୀରରେ ଯକୃତ ପରିପକ୍ୱତା ଲାଭ କରିନଥିବାରୁ ରକ୍ତରୁ ବିଲିରୁବିନ କଣିକାଗୁଡ଼ିକ ନିଷ୍କାସିତ ହୋଇନପାରି ଜଣ୍ଡିସ୍ ହୁଏ । ଏଭଳି ଶିଶୁଙ୍କ ଶରୀରରେ ଜନ୍ମର ଏକ ସପ୍ତାହ ମଧ୍ୟରେ ରକ୍ତକ୍ଷୟ ହୋଇ Haemolytic Jaundic ହୁଏ । ସେହିପରି Breast Milk Jaundice ଏବଂ ରକ୍ତ ବିଷାକ୍ତ ହୋଇ Septicalmia ହେଲେ ମଧ୍ୟ ଶିଶୁ ଜଣ୍ଡିସ୍ ବା କାମଳ ରୋଗରେ ଆକ୍ରାନ୍ତ ହୁଏ । ତେଣୁ ନବଜାତ ଶିଶୁର ଜଣ୍ଡିସ୍ ଯଦି ୨ ସପ୍ତାହ ମଧ୍ୟରେ ଆପେ ଭଲ ନହୁଏ, ତେବେ ତାହାର ଅଧିକ ପରୀକ୍ଷା ପାଇଁ ବିଶେଷଜ୍ଞ ଡାକ୍ତରଙ୍କ ସଙ୍ଗେ ପରାମର୍ଶ କରିବା ଉଚିତ ।

କେତେକ ଶିଶୁଙ୍କର ପିତ୍ତନଳୀ ଜନ୍ମରୁ ରୁଦ୍ଧ ହୋଇଥାଏ । କିମ୍ବା ବାହାରୁ ଚିପି ହୋଇଥାଏ । ଏଭଳି ଶିଶୁଙ୍କର ମଧ୍ୟ ଜଣ୍ଡିସ୍ ହୁଏ । ସେହିଭଳି ନବଜାତ ଶିଶୁ ବିଭିନ୍ନ ଜୀବାଣୁ ଓ ଭୂତାଣୁ ସଂକ୍ରମଣରେ ଯକୃତ ରୋଗରେ ଆକ୍ରାନ୍ତ ହେଲେ ଓ ଜେନେଟିକ ଏବଂ ମେଟାବୋଲିକ ଅସୁବିଧାରେ ପଡ଼ିଲେ ମଧ୍ୟ ଜଣ୍ଡିସ୍ ହୁଏ ।

ଜଣ୍ଡିସ୍ ରୋଗରେ ଆକ୍ରାନ୍ତ ହେଲେ ଶିଶୁର ଆଖି ଓ ଚର୍ମ ମୁଖ୍ୟତଃ ହଳଦିଆ ଦେଖାଯାଏ । ଶିଶୁ ନିସ୍ତେଜ ହୋଇ

ପଡ଼ି ରହେ । ହାତଗୋଡ଼ ହଲାଇ ଖେଳେ ନାହିଁ, ଖାଇବା ପ୍ରତି ଆଗ୍ରହ ଦେଖାଏ ନାହିଁ । ଜଣ୍ଡିସ୍ ସାଂଘାତିକ ହୋଇଗଲେ ଜନ୍ମର ପ୍ରଥମ ସପ୍ତାହ ମଧ୍ୟରେ ବିଲିରୁବିନ୍ ୨୦ ମି:ଗ୍ରା:/୧୦୦ ମି:ଲି: ହୋଇ ମସ୍ତିଷ୍କ ଜଣ୍ଡିସ୍‌ର ଲକ୍ଷଣ ଦେଖାଦିଏ । ଏଭଳି ଅବସ୍ଥାରେ ଶିଶୁ ଅତି ଅସୁସ୍ଥ ହୋଇପଡ଼ି ନିଶ୍ୱାସ ନେବାରେ କଷ୍ଟ ଅନୁଭବ କରେ । ଏହି ମସ୍ତିଷ୍କ ଜଣ୍ଡିସ୍‌କୁ **Cerebral Jaundice** ମଧ୍ୟ କୁହାଯାଏ । ଏଥିରେ ମସ୍ତିଷ୍କର ନିମ୍ନଭାଗରେ ପିତ୍ତକଣିକା ଜମିଯାଇ ମସ୍ତିଷ୍କର କ୍ଷତି ଘଟାଏ । ଶିଶୁର ମୁଣ୍ଡ ବେକପାଖରେ ପଛକୁ ଟାଣିହୋଇ ମୁହଁ ହାତଗୋଡ଼ର ମାଂସପେଶୀ ବାରମ୍ବାର ସଙ୍କୁଚିତ ହୋଇଯାଏ । ଶିଶୁ ତୀକ୍ଷ୍ଣ ସ୍ୱରରେ କାନ୍ଦେ ହାତମାରି ହାତଗୋଡ଼ ସ୍ଥିର ହୋଇଯାଏ । ଏଭଳି ଲକ୍ଷଣ ଦେଖା ଦେଲେ ତୁରନ୍ତ ଚିକିତ୍ସକଙ୍କ ସହ ପରାମର୍ଶ କରିବା ଆବଶ୍ୟକ । ମାତ୍ର ଚିକିତ୍ସାରେ ବିଳମ୍ବ ଘଟିଲେ ପ୍ରଥମ ସପ୍ତାହ ଶେଷ ବେଳକୁ ଶିଶୁର ପ୍ରାଣହାନୀ ଘଟିବାର ସମ୍ଭାବନା ଥାଏ ।

ଚିକିତ୍ସା– ଜଣ୍ଡିସ୍‌ର କାରଣ ଯାହା ହେଉନା କାହିଁକି, ଶିଶୁର ଶରୀରରୁ ଅତ୍ୟଧିକ ପିତ୍ତକଣିକା ନିଷ୍କାସନ କରିବା ଦ୍ୱାରା ଜଣ୍ଡିସ୍ ଅତିଶୀଘ୍ର ଭଲହୁଏ ଏବଂ ମସ୍ତିଷ୍କ ଜଣ୍ଡିସ୍‌ରୁ ଶିଶୁକୁ ରକ୍ଷା କରାଯାଇଥାଏ । ସେଥିପାଇଁ ରଶ୍ମିଚିକିତ୍ସା ଏବଂ ବଦଳି ରକ୍ତ ସଞ୍ଚାରଣ ପଦ୍ଧତି ଅନୁସରଣ କରାଯାଇଥାଏ ।

## (୧) ରଶ୍ମି ଚିକିତ୍ସା :

ଶିଶୁକୁ ଅତ୍ୟଧିକ ଆଲୋକ ନିକଟରେ ରଖିଲେ ଚର୍ମରେ ଥିବା ବିଲିରୁବିନ ଆଲୋକଶକ୍ତି ଦ୍ୱାରା ଗଳିଯାଏ । ଫ୍ଲୋରେସେଣ୍ଟ ବଲବ ଜଳାଇ ଶିଶୁର ଶଯ୍ୟା ପାଖରେ ରଖିଲେ ଅଣ୍ଡଓଜନର ଶିଶୁଙ୍କର ମଧ୍ୟ ଜଣ୍ଡିସ୍ ଭଲ ହୋଇଯାଏ ଏବଂ ବଦଳି ରକ୍ତ ସଞ୍ଚାରଣ ପଦ୍ଧତିର ଆବଶ୍ୟକ ହୁଏନାହିଁ । ଏଥିପାଇଁ ୪–୬ଟି ଟ୍ୟୁବ ଲାଇଟ୍ ଜଳାଇ ଶିଶୁର ଶରୀରଠାରୁ ୪୫ ସେ:ମି: ଦୂରରେ ରଖାଯାଇଥାଏ । ଶରୀରର ସବୁ ଅଂଶ ଆଲୋକ ଦିଗକୁ ରଖିବାପାଇଁ ବାରମ୍ବାର ଶିଶୁର ବଡ଼ ପରିବର୍ତ୍ତନ କରାଯାଏ । ଏହାଦ୍ୱାରା ଆଲୋକରଶ୍ମିର ପ୍ରଖରତା (ସେ:ମି:) ୨ ରେ ୪–୯ ମାଇକ୍ରୋୱାଟ ହୁଏ । ମାତ୍ର ଏତେ ଉଜ୍ଜ୍ୱଳ ଆଲୋକ ଦ୍ୱାରା ଚକ୍ଷୁ ଓ ଅଣ୍ଡକୋଷର କ୍ଷତି ହେବାର ସମ୍ଭାବନା ଅଛି । ଏଣୁ ପ୍ୟାଡ୍ ଦ୍ୱାରା ଏ ଦୁଇଟି ଅଂଶକୁ ଘୋଡ଼ାଇ ରଖାଯାଇଥାଏ ଜନ୍ମପରେ ଅତିଶୀଘ୍ର ଜଣ୍ଡିସ୍ ହେଲେ କିମ୍ବା ରକ୍ତରେ ବିଲିରୁବିନର ପରିମାଣ ଅତିଶୀଘ୍ର ବୃଦ୍ଧି ଘଟିଲେ ଫଟୋଥେରାପି କରାଯାଏ । ଅପରିପକ୍ୱ ଓ ଅତି ଅସୁସ୍ଥ ଶିଶୁଙ୍କୁ ମଧ୍ୟ ଏହି ପଦ୍ଧତିରେ ଚିକିତ୍ସା କରାଯାଇଥାଏ ।

ଫଟୋଥେରାପି ଚିକିତ୍ସା ଦ୍ୱାରା ବେଳେ ବେଳେ ଶରୀରରେ ଲାଲବର୍ଣ୍ଣର **Rash** ଦେଖାଯାଏ, ପତଳା ଝାଡ଼ା ... ଶରୀର ଅତ୍ୟଧିକ ଉତପ୍ତ ହୁଏ, ଶରୀରରୁ ଜଳହାନି ହୁଏ ... ଶରୀର ବ୍ରୋଞ୍ଜ ବର୍ଣ୍ଣଧାରଣ କରେ ।

ତଥାପି ଗ୍ରାମାଞ୍ଚଳରେ ଏବଂ ଉନ୍ନତ ଚିକିତ୍ସାଳୟ ନଥିବା ... ଏହି ଚିକିତ୍ସା ପଦ୍ଧତି ଅବଲମ୍ବନ କରାଯାଇଥାଏ । ଯେଉଁଠାରେ ବିଶେଷଜ୍ଞ ଚିକିତ୍ସକ ନାହାନ୍ତି କିମ୍ବା ରକ୍ତ ସଞ୍ଚାରଣର ସୁବିଧା ନାହିଁ ସେଠାରେ ମଧ୍ୟ ଏହି ଚିକିତ୍ସା ଦ୍ୱାରା ଜଣ୍ଡିସ୍ ଶିଶୁର ଚିକିତ୍ସା କରାଯାଏ । ବଦଳି ରକ୍ତ ସଞ୍ଚାରଣ ପଦ୍ଧତି ଦ୍ୱାରା ଚିକିତ୍ସା ... ପୂର୍ବରୁ ମଧ୍ୟ ଶିଶୁକୁ ଏହି ଚିକିତ୍ସା କରାଯାଇପାରେ ।

## (୨) ବଦଳି ରକ୍ତ ସଞ୍ଚାରଣ (Exchange Transfusion :

ଶିଶୁ ଅତି ଅସୁସ୍ଥ ହେଲେ, ଦ୍ରୁତ ବିଲିରୁବିନର ପରିମାଣ ବୃଦ୍ଧି ଘଟିଲେ ଏବଂ ***Phototherapy*** ଚିକିତ୍ସା ସତ୍ତ୍ୱେ ବିଲିରୁବିନ ପରିମାଣ ବୃଦ୍ଧି ଘଟିଲେ ଏହି ଚିକିତ୍ସା ପଦ୍ଧତି ଅବଲମ୍ବନ କରାଯାଏ । ଏଥିରେ ଶିଶୁର ଶରୀରରୁ ପର୍ଯ୍ୟାୟକ୍ରମେ ... କାଢ଼ିନେଇ ସୁସ୍ଥଲୋକର ସଦ୍ୟ ସଂଗ୍ରହୀତ ରକ୍ତ ଦିଆଯାଏ ... ଫଳରେ ବିଲିରୁବିନ ପରିମାଣ ଅତିଶୀଘ୍ର ହ୍ରାସ ପାଇ ଶିଶୁ ସୁସ୍ଥ ହୁଏ । **Whole Blood** ୩୫°–୩୭° ସେଣ୍ଟିଗ୍ରେଡ୍ ଉତ୍ତାପରେ ଶିଶୁର ଶରୀରରେ ସଞ୍ଚାରଣ କରାଯାଇଥାଏ । ... ରକ୍ତ ସଞ୍ଚାରଣ ସମୟରେ ଶିଶୁକୁ ଖାଦ୍ୟ ଦିଆଯାଏ ନାହିଁ ... ହେବାକୁ ଦିଆଯାଏ ନାହିଁ । ପ୍ରତ୍ୟେକ ୪–୮ ଘଣ୍ଟା ... ସାଧାରଣ ସ୍ତରକୁ ଆଣିବା ପାଇଁ ବାରମ୍ବାର Exchange **Transfusion** ଆବଶ୍ୟକ ହୁଏ । ସାଧାରଣ ଜଣ୍ଡିସ୍ ... ମସ୍ତିଷ୍କ ଜଣ୍ଡିସ୍‌ରେ ଏହାର ଆବଶ୍ୟକତା ଓ ... ବିଶେଷଜ୍ଞ ଡାକ୍ତରଙ୍କ ତତ୍ତ୍ୱାବଧାନରେ Exchange **Transfusion** କରାଗଲେ ଶିଶୁ ମୃତ୍ୟୁହାର ୧% ରୁ କମ ... ଅଟେ ।

ନବଜାତ ଶିଶୁଙ୍କର ଜଣ୍ଡିସ୍ ଏକ ଅତିସାଧାରଣ ରୋଗ । ... ଏହାକୁ ଅବହେଳା ନକରି ତୁରନ୍ତ ବିଶେଷଜ୍ଞ ଡାକ୍ତରଙ୍କ ... ପରାମର୍ଶ କରି ଅବିଳମ୍ବେ ଚିକିତ୍ସା କରାଇବା ... ଅପରିହାର୍ଯ୍ୟ ।

---

ପ୍ରସୂତି ଓ ସ୍ତ୍ରୀ ରୋଗ ବିଶେଷଜ୍ଞା,
ଓ: ସ୍ୱା: ଓ: ନି: ଚିକିତ୍ସାଳୟ,
ଭୁବନେଶ୍ୱର–୩ ।

# ମୟୂରଭଞ୍ଜ ଜିଲ୍ଲାରେ ଫଳଚାଷ

* ଜାନକୀ ବଲ୍ଲଭ ଦାଶ *

ମୟୂରଭଞ୍ଜ ଏକ ଆଦିବାସୀ ବହୁଳ ଜିଲ୍ଲା ଓ ୨୬ ଗୋଟି ବ୍ଲକ୍‌କୁ ନେଇ ଏହା ଗଠିତ । ବାର୍ଷିକ ଏଠାରେ ହାରାହାରି ଭାବେ ବୃଷ୍ଟିପାତ ହେଉଛି ୧୬୫୦ ମି.ମି. ଏବଂ ତନ୍ମଧ୍ୟରୁ ଅଧିକାଂଶ ବୃଷ୍ଟିପାତ ମେ'ଠାରୁ ସେପ୍ଟେମ୍ବର ମଧ୍ୟରେ ହୋଇଥାଏ, ହାରାହାରି ତାପମାନ ବିଭିନ୍ନ ସ୍ଥାନାନୁଯାୟୀ ୬ଠରୁ ୪୪ଠ ସେଣ୍ଟିଗ୍ରେଡ୍ ମଧ୍ୟରେ ହୋଇଥାଏ ଓ ଏହାକୁ 'ପ୍ରବଳ-ଋତୁ'ର ଜିଲ୍ଲା ବୋଲି କୁହାଯାଏ ଅର୍ଥାତ, ପ୍ରଚଣ୍ଡ ଗ୍ରୀଷ୍ମ, ପ୍ରବଳ ବର୍ଷା ଓ ପ୍ରଚୁର ଥଣ୍ଡା ପରିଲକ୍ଷିତ ହୁଏ । ଏହି ଜିଲ୍ଲାରେ ମୋଟ ଚାଷ ଉପଯୋଗୀ ଜମି ୪,୪୭,୨୧୪ ହେକ୍ଟର ମଧ୍ୟରୁ ଉଚ୍ଚ କିସମ ଜମି ୧,୯୫,୪୪୧ ହେକ୍ଟର (ପ୍ରାୟ ୪୩.୭%) ମଧ୍ୟମ କିସମ, ୧,୨୪,୭୩୦ ହେକ୍ଟର (ପ୍ରାୟ ୨୭.୯ ପ୍ରତିଶତ) ଏବଂ ଅବଶିଷ୍ଟ ନିମ୍ନ କିସମ ଜମି, ଯାହାକି ଫଳଚାଷ ପାଇଁ ଅନୁପଯୁକ୍ତ । ଏହି ଜିଲ୍ଲାରେ ଜଳସେଚିତ ଅଞ୍ଚଳ ଖୁବ ସୀମିତ, ଫଳରେ ଧାନ, ସବାଇ ଘାସ ବ୍ୟତୀତ ବିଭିନ୍ନ କିସମର ଫଳ ଇତ୍ୟାଦି ରୋପଣ କରିବାର ବିଶେଷ ଅବକାଶ ନାହିଁ ।

ଜିଲ୍ଲାର ମୃତ୍ତିକା ଦୁଇଗୋଟି ଭାଗରେ ବିଭକ୍ତ— ଲାଲ ମୃତ୍ତିକା ଏବଂ ମାକଡ଼ା ପଥର ଜାତୀୟ ମୃତ୍ତିକା । ଲାଲ ମୃତ୍ତିକା ଥିବା ଅଞ୍ଚଳରେ ସାଧାରଣତଃ ଖୁବ ଲାଲ, ହୋରଡ଼ା ଲାଲ, ମଟାଳ ମୋରଡ଼ା ଲାଲ ମୃତ୍ତିକା ଏବଂ ମାକଡ଼ା ପଥର ଜାତୀୟ ମୃତ୍ତିକାରେ ମୋରମ ଓ ପଥୁରିଆ ମାଟି ଦୃଷ୍ଟି ଗୋଚର ହୁଏ । ବର୍ତ୍ତମାନ କୃଷିଭିତ୍ତିକ ଉଦ୍ୟାନ ଓ ବଜାରର ଚାହିଦା ତଥା ଶୁଷ୍କାଞ୍ଚଳ ଉଦ୍ୟାନ କୃଷି, ଅଣଜଳସେଚିତ ଅଞ୍ଚଳରେ ପ୍ରସାର ଲାଭ ଉପରେ ଅଧିକା ଗୁରୁତ୍ୱ ଦିଆଯାଉଛି । ଏଥିନିମନ୍ତେ ଜଳପ୍ରକଳ୍ପମାନଙ୍କ ନିକଟରେ ମିଳୁଥିବା ଜଳ ଓ ମାଟିର ଉର୍ବରାଂଶକୁ ସଦୁପଯୋଗ କରି ଉଦ୍ୟାନ ବିକାଶ ଦିଗରୁ ବିଶେଷ ପରିକଳ୍ପନାମାନ କରାଯାଉଛି । ଜିଲ୍ଲାର କୃଷୀଭାଇମାନେ ଶୁଷ୍କାଞ୍ଚଳ ଚାଷ ଓ କୃଷି ଭିତ୍ତିକ ଉଦ୍ୟାନର ପ୍ରସାରଣ ଉପରେ ଆଗ୍ରହ ପ୍ରକାଶ କରୁଛନ୍ତି, କାରଣ ଏଥିରୁ ଲାଭର ମାତ୍ରା ମଧ୍ୟ ଯଥେଷ୍ଟ ରହିଛି ।

ମୟୂରଭଞ୍ଜର ଜିଲ୍ଲାପାଳ ଶ୍ରୀ ବିପିନ କୁମାର ସାକ୍ସେନାଙ୍କ ନିର୍ଦ୍ଦେଶକ୍ରମେ, ଜିଲ୍ଲାର ଶୁଷ୍କାଞ୍ଚଳରେ, ଫଳଚାଷ କରିବା ପାଇଁ ବିଶେଷ ଉଦ୍ୟମ କରାଯାଇଛି ଓ ପରୀକ୍ଷଣ ହୋଇଥିବା କିଛି ଫଳବୃକ୍ଷରୁ ଚାଷୀମାନେ ବିଶେଷ ଲାଭବାନ ହୋଇଥିବାର ଜଣାପଡ଼ିଛି । ମୟୂରଭଞ୍ଜର ଶୁଷ୍କ ଅଞ୍ଚଳରେ, ଫଳ ଉଦ୍ୟାନର ପ୍ରସାର ନିମନ୍ତେ ଅଧିକ ଲାଭ ଦେଉଥିବା ଫଳଗୁଡ଼ିକ ହେଉଛି—ଆମ୍ବ, ପିଜୁଳି, ପଣସ, ସୀତାଫଳ, ବରକୋଳି, ଡାଳିମ୍ବ, ଜାମୁ, ବେଲ, ସଜନା ଓ ତେନ୍ତୁଳି । ଜଳପ୍ରକଳ୍ପ ଅଞ୍ଚଳ ତଥା ନିଶ୍ଚିତ ଜଳସେଚିତ ଅଞ୍ଚଳରେ, ନଡ଼ିଆ, କଦଳୀ, କମଳା, ଲେମ୍ବୁ, ସପୁରୀ ଚାଷ ଉପରେ ଗୁରୁତ୍ୱ ଦିଆଗଲେ ଏଠାକାର ଚାଷୀମାନେ ବିଶେଷ ଲାଭବାନ ହୋଇ ପାରିବେ ବୋଲି, ଏକ ସମୀକ୍ଷାରୁ ଜଣାପଡ଼ିଛି । ମୟୂରଭଞ୍ଜର ଶୁଷ୍କାଞ୍ଚଳରେ ଚାଷ ନିମନ୍ତେ କରାଯାଉଥିବା ବୃକ୍ଷଗୁଡ଼ିକର ଚେର, ସାଧାରଣତଃ ଅଧିକ ଗଭୀରକୁ ଯାଇଥାଏ ଏବଂ ଏହା ମରୁଡ଼ି ତଥା ବିଳମ୍ବ ବୃଷ୍ଟିପାତ ଆଦି ସହିନେଇପାରେ, ଯଦ୍ୱାରା ଏହା ସ୍ୱଳ୍ପକାଳୀନ କୃଷିଭିତ୍ତିକ ଚାଷଠାରୁ ଅଧିକ ଉପାଦେୟ ହୋଇପାରେ । କାରଣ ଏହା ବର୍ଷାଭାବରୁ ସମ୍ପୂର୍ଣ୍ଣ ନଷ୍ଟ ନହୋଇ, ବଞ୍ଚି ରହିଥାଏ ଏବଂ ବର୍ଷାଋତୁ ପରେ ପୁନର୍ବାର ସତେଜ ହୋଇ ସୁନ୍ଦର ଫଳବୃକ୍ଷରେ ପରିଣତ ହୁଏ । କିନ୍ତୁ ସାଧାରଣ ସ୍ୱଳ୍ପକାଳୀନ ଫସଲଟି ବର୍ଷାଭାବରୁ, ସେହି ସମୟ ମଧ୍ୟରେ ମରିଯାଇ ଚାଷୀକୁ କ୍ଷତିରେ ପକାଏ । ସେଥିପାଇଁ ସ୍ଥାୟୀ ଫଳବୃକ୍ଷ ରୋପଣ ଦ୍ୱାରା ଦୀର୍ଘ ଓ ବିସ୍ତାରିତ ଚେର ପ୍ରଭାବରେ ମୃତ୍ତିକା କ୍ଷୟକୁ ରୋକିବା ସଙ୍ଗେ ସଙ୍ଗେ ପରିବେଶରେ ମଧ୍ୟ ସୁରକ୍ଷା ଓ ସୁନ୍ଦର ବାତାବରଣ ପ୍ରସ୍ତୁତ କରିଥାଏ ।

ଜିଲ୍ଲାରେ ଫଳବୃକ୍ଷ ରୋପଣ କରିବା ଦ୍ୱାରା ବର୍ଷସାରା କର୍ମସଂସ୍ଥାନର ବ୍ୟବସ୍ଥା ହୋଇପାରିବ ଓ ଗ୍ରାମ୍ୟ ଶ୍ରମ-ଶକ୍ତି ଆଉ ସହରାଭିମୁଖୀ ହେବନାହିଁ । ଜିଲ୍ଲାର ଶୁଷ୍କାଞ୍ଚଳରେ ଫଳବୃକ୍ଷ ରୋପଣ ନିମନ୍ତେ ବର୍ଷାଋତୁ ପୂର୍ବରୁ ଲଗାଇବା ଆବଶ୍ୟକ, ଯଦ୍ୱାରା ବର୍ଷାଋତୁ ମଧ୍ୟରେ ପ୍ରଚୁର ପରିମାଣରେ ବୃଷ୍ଟିଜଳ ପାଇ, ଗଛଗୁଡ଼ିକ ଦୃଢ଼ ହୋଇପାରିବ । ଫଳବୃକ୍ଷ ରୋପଣ ପୂର୍ବରୁ ଗାତଗୁଡ଼ିକୁ ଭଲଭାବେ ଖୋଳାଯାଇ, ଭଲ ମାଟି, ଖତ, ସାର ଦିଆଯାଇ ପୂର୍ଣ୍ଣ କରାଯିବା ଆବଶ୍ୟକ, ଯଦ୍ୱାରା ଚେରଗୁଡ଼ିକ ଖୁବ୍ ଶୀଘ୍ର ମାଟି ତଳକୁ ଯାଇ ଫଳବୃକ୍ଷଗୁଡ଼ିକୁ ଉପଯୁକ୍ତ ଖାଦ୍ୟ ଯୋଗାଇବାରେ ସାହାଯ୍ୟ କରେ । ଫଳବୃକ୍ଷ ଚାରାଗୁଡ଼ିକ ସାଧାରଣତଃ ସୁସ୍ଥସବଳ ଓ ଅନ୍ତତଃ ପକ୍ଷେ ଦୁଇ ବର୍ଷରୁ ଅଧିକା ହୋଇଥିବା ଆବଶ୍ୟକ । ଲଗାଇବା ସମୟରେ ଚାରାଗୁଡ଼ିକର ମୂଳ ବା

ଚେରକୁ ନଷ୍ଟ ନକରି ସିଧା ଭାବରେ ଖତ, ମାଟି ଦିଆଯାଉଥିବା ଗାତମାନଙ୍କରେ ଲଗାଯାଏ । ଜିଲ୍ଲାର ବାରିପଦା, ଉଦଳା, କରଞ୍ଜିଆ, ବିସୋଇ, ଖୁଣ୍ଟି ଆଦି ଅଞ୍ଚଳରେ ପରୀକ୍ଷାମୂଳକ ଭାବେ ଫଳଚାଷ କରାଯାଇ, ଏବେ ଦେଖାଯାଉଛି ଯେ, ଏହା ଧାନଚାଷଠାରୁ ମଧ୍ୟ ଅଧିକ ଲାଭପ୍ରଦ । ଏଦିଗରେ କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ମଧ୍ୟ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛନ୍ତି ।

**ସହାୟକ ତଥ୍ୟ :**–ଜିଲ୍ଲା ମୃତ୍ତିକା ସଂରକ୍ଷଣ ଓ ଉଦ୍ୟାନ ବିଭାଗ, ମୟୂରଭଞ୍ଜ ।

---

ଜିଲ୍ଲା ପ୍ରତିନିଧି, ଏକ୍ସପ୍ରେସ ଓ ପତ୍ରିକା,
ଶ୍ରୀରାମତୀ ଭବନ, ଟେମ୍ପଲ୍‌ଷ୍ଟ୍ରିଟ୍, ବାରିପଦା-୭୫୭୦୦୧ ।



୫ ନମ୍ବର ଜାତୀୟ ରାଜପଥରେ ବନ୍ୟା ଦ୍ୱାରା ହୋଇଥିବା ଘାଇକୁ ବିଧାନ ସଭା ସଦସ୍ୟ ଶ୍ରୀ ଅମର ଶତପଥୀ ପରିଦର୍ଶନ କରୁଛନ୍ତି ।

# ଅଗଷ୍ଟ ପନ୍ଦର ଆସିଛି

* ଇଂ: ଅରୁଣ କୁମାର ପଣ୍ଡା *

ଆଜି ଆସିଛି ଅଗଷ୍ଟ ପନ୍ଦର
ଭାରତ ମାତାକୁ ପୂଜିବା ଆସରେ ସିଏ ପରା ଆମ ମନ୍ଦିର
ଆଜି ଆସିଛି ଅଗଷ୍ଟ ପନ୍ଦର ॥

ଆଜି ପରା ତା'ର ଜନମ ଦିନ
ସେଥି ପାଇଁ ତା'ର ଆନନ୍ଦ ମନ
ସମସ୍ତେ ଗାଆନ୍ତି ତାହାରି ବନ୍ଦନା, ଶୁଭେ କେତେ ସତେ ସୁନ୍ଦର !
ଆଜି ଆସିଛି ଅଗଷ୍ଟ ପନ୍ଦର ॥

ଜାଣିବା ଆସ ତା' ଜନମ କଥା
କେତେ ବୀର ଦେଲେ ତା'ପାଇଁ ମଥା
କେତେ ବିପଦକୁ ହସି ହସି ସିଏ ବରି ନେଲେ କରି ଆଦର
ଆଜି ଆସିଛି ଅଗଷ୍ଟ ପନ୍ଦର ॥

କେତେ ଯୁଦ୍ଧ ଗଲା ଫସର ଫାଟି
ଅସହଯୋଗରେ ଫିଟିଲା ଗଣ୍ଠି
ଅହିଂସାର ମନ୍ତ୍ରୀ ବାପୁ ଶୁଣି ଦେଲେ, ପିଛି ଖଣ୍ଡେ ଧଳା ଚଦର
ଆଜି ଆସିଛି ଅଗଷ୍ଟ ପନ୍ଦର ॥

ଆଜି ସେଇ ମାଆ ମୁଖରେ ହସ
ଶାନ୍ତି ଓ ମଇତ୍ରୀ, ପ୍ରିତିର ଦେଶ
ଧରମର ଜୟ ହୁଏ କାଳ କାଳ, ଅହିଂସାକୁ କର ଆଦର ॥
ଆଜି ଆସିଛି ଅଗଷ୍ଟ ପନ୍ଦର ॥

ଦେଶ ଆମ ପାଇଁ ସରଗ ପରି
କିଏ ଅବା ହେବ ଆମରି ସରି
ବିଜୟ ପତାକା ଉଡ଼ାଇବା ଆସ, କର ନାହିଁ କେହି ଉଛୁର
ଆଜି ଆସିଛି ଅଗଷ୍ଟ ପନ୍ଦର ॥

ଗ୍ରା/ପୋ: ଜୋଗୀପଡ଼ା
ଥା: ଧଣ୍ଡେଶ୍ୱର
ଜି: ଭଦ୍ରକ-୭୫୬୧୨୫

# ବିପ୍ଳବୀ ବୀର ଚକରା ବିଶୋଇ

* ମୋତିଲାଲ୍ ପତି *

ଦେଶ ମାତୃକା ରକ୍ଷା ପାଇଁ
ରକ୍ଷା କବଚ ହୃଦୟେ ବହି
ବଉଦ ମୂଳକେ କନ୍ଧ ମେଳି
କରି ଦେଇଥିଲା ଆତ୍ମବଳୀ
ଜୀବନ ସାରା
ରଖିଥିଲା ପଣ କରିବାକୁ ରଣ
ଘଉଡ଼ାଇ ଦେବ ଦେଶରୁ ଗୋରା
ସେଇ ଆମ ବୀର ଚକରା
ବିପ୍ଳବୀ ବୀର ଚକରା ॥

ଘୁମୁସରର ତୋରା ବାଡ଼ି
ଗ୍ରାମେ ଜନମି ଗଲା ସେ ବଢ଼ି
ଘୋର ବିପିନେ ଏକଲା ବୁଲେ
ଖେଳ ଖେଳଇ ଶାର୍ଦ୍ଦୁଳ ତୁଲେ
ବରଷା ଖରା
ବାଲ୍ୟ କାଳୁ ସେହି ଦେହେ ସହି ସହି
ହୋଇଥିଲା ହିଆ ଶକ୍ତ ଗୁଣ୍ଡରା
ସେଇ ଆମ ବୀର ଚକରା
ବିପ୍ଳବୀ ବୀର ଚକରା ॥

ବାଲ୍ୟରୁ ଧରି ବର୍ଚ୍ଛା, ଢାଲ
ଭାଲି କରବାଳ ଧାମଣା ଶଲ୍ୟ
ମାଲଯୁଦ୍ଧ ସାଧି ନିତି ନିତି
ଖୋଜି ଆଣି ତା'ର ସାଙ୍ଗସାଥୀ
କନ୍ଧ ସଉରା
କରି ଏକତ୍ରିତ ଗାଇ ଯୋଦ୍ଧା ଗୀତ
ସଭିଙ୍କୁ କରିଲା ରଣ ଚତୁରା
ସେଇ ଆମ ବୀର ଚକରା
ବିପ୍ଳବୀ ବୀର ଚକରା ॥

ନିମ୍ନୀବୀ ଗୋରା ସ୍ୱାର୍ଥ ନୀତି
ଦେଖିଥିଲା ଯା' ଛାତି କରତି
ତେର ବରଷୁ ଶପଥ ନେଇ
ଆହତ ସିଂହ ପରାୟ ତେଣୁ
ଗରଜି ତୋରା
ବରଜିଲା ମୋହ ସରଜିଲା ଦ୍ରୋହ
ଫିରିଙ୍ଗି ପଲକୁ କଲା ନଗରା
ସେଇ ଆମ ବୀର ଚକରା
ବିପ୍ଳବୀ ବୀର ଚକରା ॥

ଆଠମଲ୍ଲିକ, ରାମପୁର
ବୌଦ, ଆଠଗାଁ, ଭଞ୍ଜନଗର
ପାଟଣା ଗଡ଼ କରାଇ ଏକ
ଘୁମୁସର ନାଁ ରଖିଲା ଟେକ
ଦେଲା ଡାକରା
ଜାଗରେ ସିପାହୀ ଜାଗ ଉଠ ଭାଇ
ଉଠି ଆସ ମାରି ବୀର ଟାକରା
ଦେଇଥିଲା ସିଏ ଡାକରା
ବିପ୍ଳବୀ ବୀର ଚକରା ॥

"ମୁକ୍ତି ସେନା ବାହିନୀ" ଗଢ଼ି
ସ୍ୱଦେଶ ପ୍ରୀତି ଡୁରରେ ବଢ଼ି
ଖୋରଧା, ଦଶପଲା, ପିପିଲି
ରଣ ହୁଙ୍କାରେ ସେ ବୁଲି ବୁଲି
ନିର୍ଲଜ୍ଜ ଗୋରା
ହୋଇ ଉସ୍ୱାତୁରା କହୁଥିଲା ପରା
ହାଇଦର ଅଛି ବୋଲି ଚକରା
ସେଇ ଆମ ବୀର ଚକରା
ବିପ୍ଳବୀ ବୀର ଚକରା ॥

ସୁଖ ସ୍ନେହ ମୋହକୁ ତେଜି
ଶହୀଦ୍ ପଦ ନେଲା ଅରଜି
ସୋନପୁର ରାଜତନ୍ତ୍ର ସ୍ରୋତ
ତେଲ ନଦୀରେ କଲା ନିହତ
ବୀର ଚକରା
ସ୍ୱାଧୀନତା ରଣେ ଲଢ଼ି ବୀର ପଣେ
ଇତିହାସେ ହେଲା ଉଜ୍ଜ୍ୱଳ ତାରା
ସେଇ ଆମ ବୀର ଚକରା
ବିପ୍ଳବୀ ବୀର ଚକରା ॥

ଗୀତିକାର (ଆକାଶବାଣୀ),
ବେଲଗୁଣ୍ଠା, ଗଞ୍ଜାମ ।




ବ୍ରହ୍ମପୁର [illegible] ନଗରଠାରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ
[illegible] ଲାୟନସ୍ କ୍ଲବ୍ ଚକ୍ଷୁ ଚିକିତ୍ସାଳୟର ଶିଳାନ୍ୟାସ କରୁଛନ୍ତି ।



ରାଉରକେଲା ଇସ୍ପାତ କାରଖାନାର ଆଧୁନିକୀକରଣ ଓ ସମ୍ପ୍ରସାରଣ ସମ୍ପର୍କରେ
ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ବିଶ୍ୱ ବ୍ୟାଙ୍କ ପ୍ରତିନିଧି ଦଳଙ୍କ ସହିତ
[illegible] କରୁଛନ୍ତି ।



କଟକଠାରେ କର୍ମବୀର ଗୌରୀଶଙ୍କର ରାୟଙ୍କ ୭୫ତମ ଶ୍ରାଦ୍ଧ ବାର୍ଷିକୀ ଉତ୍ସବରେ
ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ଉଦ୍‌ବୋଧନ ଦେଉଛନ୍ତି ।



ରବୀନ୍ଦ୍ର ମଣ୍ଡପଠାରେ ପ୍ରଗତି ଦ୍ୱାରା ଆୟୋଜିତ ଏକ ସାଂସ୍କୃତିକ କାର୍ଯ୍ୟକ୍ରମକୁ
ପଶ୍ଚିମବଙ୍ଗ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ଗୁହ
ଉଦ୍‌ଘାଟନ କରୁଛନ୍ତି ।



ନେଡେଲ୍ ସ୍ମୃତିଠାରେ ଆୟୋଜିତ ଓଡ଼ିଶା ପ୍ରେସ୍ କ୍ଲବ୍‌ର ଦ୍ୱିତୀୟ ବାର୍ଷିକୀ ପ୍ରତିଷ୍ଠା ଉତ୍ସବରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ଉଦ୍‌ବୋଧନ ଦେଉଛନ୍ତି ।



ଖୋର୍ଦ୍ଧା ନଗରୀରେ ନିର୍ମିତି ଭବନଠାରେ ପୂର୍ତ୍ତମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି, ପଞ୍ଚାୟତରାଜ ମନ୍ତ୍ରୀ ଶ୍ରୀ ଦାମୋଦର ରାଉତ, ବିଧାନ ସଭା ସଦସ୍ୟ ଶ୍ରୀଅମର ଶତପଥୀ ନିର୍ମିତି ଭବନ କର୍ମଶାଳା କଳିଙ୍ଗ ଆବାସ ଯୋଜନାକୁ ପରିଦର୍ଶନ କରୁଛନ୍ତି ।



ସୂଚନା ଭବନଠାରେ ଉର୍ଦ୍ଦୁ ଏକାଡେମୀ ଦ୍ୱାରା ପୁରସ୍କାର ପ୍ରଦାନ ଉତ୍ସବ
ଓ ନିଖିଳ ଓଡ଼ିଶା ମୁଶାଏରାରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ
ରେଡ୍ଡୀ ଅଭିଭାଷଣ ଦେଉଛନ୍ତି



କେନ୍ଦ୍ର ମନ୍ତ୍ରୀ ଶ୍ରୀ ଏ. କେ. ଆଣ୍ଟୋନୀ ବନ୍ୟା ପରିସ୍ଥିତି ସମ୍ପର୍କରେ ମୁଖ୍ୟମନ୍ତ୍ରୀ
ଶ୍ରୀ ବିଜୁ ପଟ୍ଟନାୟକଙ୍କ ସହିତ ଆଲୋଚନା କରୁଛନ୍ତି ।



ରାଜ୍ୟ ବନ୍ୟା ରଣ କମିଶନର କାର୍ଯ୍ୟକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ
ସମୀକ୍ଷା କରୁଛନ୍ତି ।



ଫୁଲବାଣୀ ଜିଲ୍ଲାରେ ଡି. ଆର୍. ଡି. ଏ. ଅଧୀନରେ କାର୍ଯ୍ୟକାରୀ ହେଉଥିବା ନିଜୁତ
କୂପ ପରିକଳ୍ପନାକୁ ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ଦାମୋଦର ରାଉତ ପରିଦର୍ଶନ
କରୁଛନ୍ତି ।




ଭୁବନେଶ୍ୱରଠାରେ ବିଶ୍ୱ ଜନସଂଖ୍ୟା ଦିବସ ଉପଲକ୍ଷେ ସ୍ୱାସ୍ଥ୍ୟ ଓ ପରିବାର
କଲ୍ୟାଣ ରାଜ୍ୟମନ୍ତ୍ରୀ ଡାକ୍ତର କମଳା ଦାସ ଏକ ପୋଷ୍ଟର ଉନ୍ମୋଚନ କରୁଛନ୍ତି ।



ଦୁବୁରୀଠାରେ ନେଲକୋ ଇସ୍ପାତ୍ କାରଖାନାର କାର୍ଯ୍ୟ ଆରମ୍ଭ ହୋଇଛି ।

# ସ୍ୱାଧୀନତାର ନିର୍ଯ୍ୟାସ

* କୌଶିକ ନାୟକ *

ପାଟି ଖୋଲିଲେ ହିଂସ୍ରର ଭୟ
ଧରିନେବେ ବେଡ଼ି ବାନ୍ଧି ହାତରେ ପାଦରେ
ଯମ ଯନ୍ତ୍ରଣାର ସ୍ୱାଦ ଚଖେଇବେ
ରାଣ୍ଡୁଡ଼ି ବିଦାରି ଖୁଣି ପକେଇବେ
ବଢ଼ିଗଲା ବିଦେଶୀ ନର ଖାଦକର ଲାଞ୍ଛ
ଜନ୍ମ ମାଟିର କୋଣେ ଅନୁକୋଣେ
ନିଜ ମାଟିରେ କଥା କହିବାର ହକ୍ ନାହିଁ
ପାଟି ଖୋଲିଲେ କୋରଡ଼ା ପ୍ରହାର
ସେଇମାନେ ଏବେ ମଧ୍ୟ ଜୀଇଁଛନ୍ତି
ସେଇଁମାନଙ୍କ ପିଠିରୁ କୋରଡ଼ାର ଦାଗ
ଏପାଏ ନିଭିନି ଆଦେଶ ଜାହିର
କରୁଥିଲେ ଉଲଙ୍ଗ ଲୌହ ଦଣ୍ଡର
ତେଙ୍କା ମାରି ବଣିଜ କରି ଆସିଥିବା
ବେପାରୀ ବଣିକ ।
ଆମ ରକ୍ତର ସ୍ୟାମ୍ପେନ ପିଇ
ଜବର୍ଦ୍ଦସ୍ତି ଆଲିଙ୍ଗନ କଲେ ରତ୍ନମୁଖା ଦଶ
ସର୍ବଂସହା ଭାରତ ମାତାର ଅପନିନ୍ଦା କଲେ
ଶୋଷିନେଲେ ପୁଳାପୁଳା ରକ୍ତ ଆଉ ମାଂସ ।

ଅଗ୍ନି ଜଳିଲା ଏକତା, ସମତା, ଭାତୃ ଭାବର
ଡେଲିସ୍ଥାନ ଶିଖା ନେଇ, କୋରାପୁଟ ଆଦିବାସୀ
ଆଦିମ ପଲ୍ଲୀରୁ ଜାଲିଆନାବାଗ୍ ଯାଏ,
ଗୁଞ୍ଜିଲା ନିନାଦ 'ସ୍ୱରାଜ୍ୟ ଆମର ଦାବୀ'
ଧୂଳୀ କରି ଗୁଳି, ଗୋଳା, ମେଘନାଦ ପାଚେରୀକୁ
ରକ୍ତରେ ଟୋକି ଧରିଲା ସ୍ୱରାଜ୍ୟର ନେତ
ହିମାଳୟଠାରୁ କୁମାରିକା ଯାଏ ଗୋଟିଏ ସ୍ୱରରେ
ହିନ୍ଦୁ ମୁସଲମାନ, ବୌଦ୍ଧ, ଖ୍ରୀଷ୍ଟିଆନ
କହିଲେ ଗାନ୍ଧୀର ଜୟ, ଜବାହାର ଜୟ ।
ଅହିଂସାର ମହାମନ୍ତ୍ର ଆଣିଲା ବିଜୟ ।

ଜୀବନର ରଙ୍ଗୀନ ସ୍ୱପ୍ନଙ୍କ ଡେଣା କାଟି
ଗାନ୍ଧୀ, ଖୁଦିରାମ, ଲକ୍ଷଣ ନାୟକ
ଦେଶ ପାଇଁ, ଜାତି ପାଇଁ, ମୁକ୍ତି ପାଇଁ
ବିଦେଶୀ କଏଦୀ ଘରେ ମୁଣ୍ଡ ଥୋଇ ନିର୍ଭୟରେ
ଛାଡ଼ିଲେ ହୁଙ୍କାର – ଏଇ ଦେଶ, ଆମ ଦେଶ
ଧର୍ମ ଭୂମି, ପୁଣ୍ୟ ଭୂମି, ବେଦ ଭୂମି
ଯାଅ ଏଠୁ ପାପୀ, ମୁର୍ଖ, ହୀନ, ଅମନୀଷ
ନାରକୀୟ କୀଟ ।

ଆଜି ସେଇ ବର୍ତ୍ତମାନ, ଡେଲିସ୍ଥାନ ଦେଶ
ବିଶ୍ୱ ଦରବାରେ ଆଙ୍କିଯାଏ ବିଚ୍ଛୁସ୍ୱର ଚିହ୍ନ
ଶିକ୍ଷାଦିଏ ଅହିଂସାର ମୂଳ ମନ୍ତ୍ର–ବିଶ୍ୱାତୀତ ଭାବ
ଯେବେ ଅଣୁ ପରମାଣୁ ବଳେ ଚୁଥ ବଳିସ୍ଥାର
ହେ ମୁକ୍ତ ଚେତେନ ।

ଏଇ ଦେଶ ଦିନେ ତୁମ କାନେ କହିଯିବ
ବିଶ୍ୱପ୍ରାଣେ ଭରିଦେବ ମୁକ୍ତିର ନିର୍ଯ୍ୟାସ ।।

---

ଶାରଦାପଥ,
ଶାର୍ଙ୍ଗ, କଟକ ।

# ଅନ୍ୟ ଜଣେ ଗାନ୍ଧୀ

* ଶ୍ରୀ ଆଦିକନ୍ଦ ବିଶ୍ୱାଳ *

ଧନ୍ୟ ନେଲସନ ମାଣ୍ଡେଲା ତୁମେ
ଜନମି ଦକ୍ଷିଣ ଆଫ୍ରିକା ଭୂମେ
ବିଶ୍ୱବାସୀଙ୍କୁ ଦେଖାଇ ଦେଲ
ନିଜ ହକ୍ ପାଇଁ ଲଢ଼େଇ କଲ ।

ବହିବନି ଲହୁ ତୁମରି ଦେଶେ
ଅହିଂସା ଆସିଛି ଶାନ୍ତ ଆକାଶେ
ଆଉ ବାଜିବନି ଗୋରା ବନ୍ଧୁକ
କଳା ଲୋକ ରହିବେ ନାହିଁ ମୂକ ।

ଦେବେ ନାହିଁ ଆଉ ପ୍ରାଣ ବାଳକ
ପାଇବାକୁ ଏହି ସ୍ୱତନ୍ତ୍ର ଟିକ
ସତେଇଶ ବର୍ଷ କାରାଗାରରେ
ବିତାଇଲା ଗୋରା ଶାସନ କାଳେ ।

ବାପୁଜୀଙ୍କଠାରୁ ପ୍ରେରଣା ପାଇ
ଅହିଂସାର ଧ୍ୱଜା ଦେଲ ଉଡ଼ାଇ
ଗାନ୍ଧିବାଦରେ ବିଶ୍ୱାସ କଲ
ଏଫ୍.ଡବ୍ଲ୍ୟୁ.ଡି.ଙ୍କ ମନ ଜିଣିଲ ।

ଉନବିଂଶ ବୈଶାନବେ ମସିହା
ବିଶ୍ୱବାସୀ ମୁଖେ ଉଠିଛି ଆହା
ମେ ମାସ ଦଶ ସ୍ୱର୍ଣ୍ଣ ଅକ୍ଷରେ
ଲିପିବଦ୍ଧ କଲ ଇତିହାସରେ ।

ଲହୁ ଲୁହ ଦେଇ ବିଜୟୀ ହେଲ
ଶାନ୍ତିର କପୋତ ଉଡ଼ାଇ ଦେଲ
ରଙ୍ଗ ଭେଦ ଡୋରି ଧରି ହାତରେ
ଏକତ୍ର କରିଲ ଗୋରା କଳାରେ ।

ଜାତୀୟ ପତାକା ନୂଆ ଗଢ଼ିଲ
ଗୋରା କଳା ସବେ ଆଗେଇ ଚାଲ
ଅନ୍ୟ ଏକ ଗାନ୍ଧି ତୁମେ ହୋଇଲ
ଦକ୍ଷିଣ ଆଫ୍ରିକା ନୂଆ ଗଢ଼ିଲ ।

ଏମ୍.ଆଇ.ଜି.-୧ ୯/୧୭,
କି. ଟି. ୫. କଲୋନୀ
ଭୁବନେଶ୍ୱର-୧୭ ।

# ଅପେକ୍ଷା

* ହୃଦାନନ୍ଦ ପାଣିଗ୍ରାହୀ *

ଲୋଡ଼େନି ମୁଁ ହାତୀ ଘୋଡ଼ା
ସିଂହାସନ, ସୁନାର ମୁକୁଟ
ଅଜାଡ଼ି ଦେଉଛି ତବ ଶ୍ରୀଚରଣେ
ମୋଆଶାର ତହବିଲ
ଅହଂକାର ଝଲମଲ ଉଜ୍ଜ୍ୱଳ ପୋଷାକ ।

ବେଶି କିଛି ମାଗୁନି ମୁଁ
ଏତିକି ମାଗୁଣି ପ୍ରଭୁ
ମୋତେ ଇ ଫେରେଇ ଦିଅ
ମୋ ଶୈଶବର ଆଖି
କୈଶୋରର ଅଲଗା ଅଧୁରା ସ୍ୱପ୍ନ
ଆକାଶର ନୀଳ ହୋଇ
ଥରୁଟିଏ ଛୁଇଁ ଦିଅ
ଏଇ ମୋର ବିଷର୍ଣ୍ଣ ବଦନ ।

ଜୀବନ ମୋ ଦରଜଳା ଧୂପ
ହୃଦୟ ଗହ୍ୱରୀ ଘରେ
ଅଣସର ଗୁଳୁଗୁଳି
ଗିରୀଷମ, ଝାଳ ଜବଜବ
ତୁମରି ମୁରତି ଆଣି ହୃଦୟରେ
ଭୁଲିଯାଏ ଜୀବନର ବିଫଳତା
ଶୂନ୍ୟ ଦୀର୍ଘଶ୍ୱାସ ।

ନିଅ ମହାବାହୁ
ମୋ ତନ୍ତୁର ସୂତାରେ ତିଆରି କରିଛି ପାଟ
ଦୋଳାରେ ଝୁଲିବ
ନିଃଶ୍ୱାସରେ ଗଢ଼ିଛି ଚଉର
ଲୁହର ମୁକୁତା ଗାନ୍ଥି
ଗଢ଼ିଛି ମୁକୁଟ ପ୍ରଭୁ ।

ଆଖିର ମୋ ସବୁଟକ ନୀଳ ନେଇ
ଗଢ଼ିଛି ମୟୂର ପୁଚ୍ଛ, ଶ୍ରଦ୍ଧାର ଚନ୍ଦନ
ତାକୁ ପିନ୍ଧି ଆସ ବାରେ କଳା କାହ୍ନୁ
ମୋ ଆଶାର ଧୂ ଧୂ ନିଛାଟ ବାଟରେ
ରକ୍ତର ପଳାଶ ବିଛି ଅପେକ୍ଷା କରିଛି ପ୍ରଭୁ
ଶୁଣିବାକୁ ତୁମରି ମୂର୍ଚ୍ଛନାଟି
ଏହି ମୋର ହାଡ଼ର ବଂଶୀରେ ।

---

ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ,
ଜି.ଏନ୍.ଏମ୍.ଏ. କଲେଜ,
ପାଳିଆବିନ୍ଧା, ଭଦ୍ରକ ।

# ତାଙ୍କ ଅଭୁଲା ସ୍ମୃତିରେ

* ଅଞ୍ଜନୀ ପଣ୍ଡା *

କେଉଁ ଅପରାଧେ
ପୂଜ୍ୟ ହେ ତୁମେ, ଚାଲିଗଲ ଏହିମାଟିରୁ
ତୁମକୁ ଖୋଜଇ ସାରା ଜଗତହେ
ଛାଡ଼ିନ କେଉଁ ଅଭିମାନେ
ଜନ୍ମ ନେଲ ବୀର ତୁମେ କେଉଁ
ଶୁଭଙ୍କରି ବେଳାରେ, ଜାଣିତ ନଥିଲେ କେହି
ସୁକୁମାର ବୟସରେ
ପକାଇବ ଚହଳ ଏ ମାଟିରେ ।
ଯୁକ୍ତ ଦାବୀ ଥିଲା ତୁମ ସ୍ୱତନ୍ତ୍ର ଉତ୍କଳ
ଇଂଲଣ୍ଡେ ଯୁକ୍ତି ବାଢ଼ିଲ, ସେ କି ଅନର୍ଗଳ
ଗଢ଼ିଲ ସ୍ୱତନ୍ତ୍ର ଉତ୍କଳ
ହେ କିର୍ତ୍ତୀବନ୍ତ ସ୍ୱର୍ଗତ ପୁରୁଷ
ଦେଇ ସୁଖ ଶାନ୍ତି ସଭିଏଁକୁ ଉନ୍ନତକରି
ଏ ମାଟି ସନ୍ତାନକୁ, ଯାହାନାମେ
ମାଟି ମାଆ ଧନ୍ୟ ହୁଅଇ ଅଶେଷ ।
ହେ ବିଦ୍ୱାନ,
ସବୁ କ୍ଷେତ୍ରେ ଥିଲା ତୁମ ଧ୍ୟାନ
ସାହିତ୍ୟ, କଳା, ସଙ୍ଗୀତ, ନାଟକ
ରାଜନୀତି, ଧର୍ମକାର୍ଯ୍ୟ ଏପରି ଅନେକ ଅନେକ
ହେ ପୂଜ୍ୟ ମହାରାଜା, ଏକା ହୋଇ ଚାଲିଗଲ
ରଖି ଦେଇ ତୁମ କିରତୀ, ଯାହା ପାଇଁ
ତୁମନାମେ, ଉଠେ ଆଜି ସୁନାମର ଧ୍ୱଜା ।
ତୁମ ସେହି ମାଟି ପାରଳା, ପୁରିବାକୁ ତବନାମ
ହୋଇଗଲା ଗଜପତି ଜିଲ୍ଲା ।
ମାଟି ମାଆ ତୁମ କାନ୍ଦିଥିଲା, ତା' ବୁକୁ ଫଟାଇ
ସେହି ସନ୍ତାନର ସ୍ମୃତିରେ, ସେହିଦିନ,
ଯେଉଁଦିନ ହେଲା ନୂଆ ଏକ ଜିଲ୍ଲା ।
ତୁମ ହାତ ଗଢ଼ା ଉତ୍କଳେ, ବାହାରୁଛି ଉତ୍କଳ ପ୍ରସଙ୍ଗ
ଅସହ୍ୟ ଯନ୍ତ୍ରଣା ମୋର, ବେଳୁବେଳୁ ବଢୁଅଛି
ହୋଇ ପାରିଲିନି ବୋଲି
ତୁମ ଅଦେଖା ପଥର ସାଙ୍ଗ ।

ଚିଙ୍କାର ସାହି,
ପାରଳାଖେମୁଣ୍ଡି ।

# ପୁନଶ୍ଚ ଇରମ

* ରୁକ୍ମିଣୀ ପଣ୍ଡା *

ଅନେକଥର ଛୁଇଁଛି
ଇରମକୁ,
ଅତୀତର ସମ୍ମୋହନରେ
ଉର୍ବର, ଭିଜାମାଟିର ସଂତାପକୁ
ଦେଖୁଛି ଇରମ ଆକାଶକୁ
ବାସ୍ତବ ସ୍ୱାଧୀନତା ପିଠିରେ
ନାଉ ହୋଇଥିବା ସମସ୍ତଙ୍କୁ,
ସବୁଠି,

ସମର୍ପି ଦେଇଥିବା ସମସ୍ତର
ଅବଶୋଷ !
ସ୍ୱାଧୀନତା ରଂଗରେ
ଚିରକାଳ ସବୁଜ
ଇରମର ନୁଖୁରା ମାଟି,
ସବୁଠି, ପ୍ରତିଶ୍ରୁତି ସହ
ଗହଳ ସାଲିସ୍ !
ଇରମରେ ନଥିଲା, ମୁକ୍ତା
ଶୋଇଛି ସ୍ୱପ୍ନ,
ପ୍ରତିଶ୍ରୁତିର ଶରାଧାରରେ
ରକ୍ତାକ୍ତ,

ଫିକା ପଡ଼ି ଆସୁଥିବା
ଇରମର ଲାଲ ମାଟି
ଅନ୍ତତଃ ଏବେ,
ଏଇ ମୁଖର ନୀରବତାରେ
ମୋତେ ସଜ୍ଞି ଦିଅ,
ମୁହୂର୍ତ୍ତେ ପାରିଲାପଣର ପ୍ରତ୍ୟୟ,
ବିନ୍ଦୁଏ ରକ୍ତର
ଗହନ ଅନ୍ତରଙ୍ଗତା,
ବାସ୍ତବ ଲୋଡ଼ିବାପଣର
ଶକ୍ତି,

ପୁନଶ୍ଚ ଉଛୁଳି ଯିବ
ଇରମର ଧୂସର ଦିହ,
ବଦଳି ଯିବ
ଇରମର ଉଜ୍ଜୀବିତ ସ୍ୱପ୍ନସେତେ
ଇତିହାସର କବରକୁ—

ଅଣ୍ଡିଆ, ଛୁରନ,
ବାଲେଶ୍ୱର–୭୫୬୦୭୬ ।

# ହେ ଅଗଷ୍ଟ ପନ୍ଦର ! ମୋ ପ୍ରଣତି ସହ ଘେନ ହେ ମିନତି

* ବ୍ରଜସୁନ୍ଦର ମହାପାତ୍ର *

ହେ ଅଗଷ୍ଟ ପନ୍ଦର !
ସବୁ ବର୍ଷ ପରି ଏ ବର୍ଷ ବି ଆସିଅଛ
ଆନନ୍ଦ ଉଲ୍ଲାସ, ଆଶା ପ୍ରତ୍ୟାଶା ମଧ୍ୟରେ !
ହେଲେ ମୋତେ (ମୁଁ ଭାରତବାସୀ !) ତୁମେ ପ୍ରତି ବର୍ଷ
ଦେଇଛ, ଦେଉଛ ଓ ଦେବ କ'ଣ ?

ମୁଁ କ'ଣ ଗ୍ରହିଁଥିଲି ?
ମୋ ଦେଶ ମାତୃକାରେ ଖଣ୍ଡ ବିଖଣ୍ଡ କରି
ଭାଇ ଭାଇ ମଧ୍ୟେ ବାଣ୍ଟି ଦେଇ
ଚିରଦିନ ଶତ୍ରୁତାର ମଞ୍ଜି ବୁଣିବାକୁ !

ମୁଁ କ'ଣ ଗ୍ରହିଁଥିଲି ?
ମୋ ଜାତିର ପିତା ବକ୍ଷେ
ମୋର ଆଉ ଜଣେ ଭାଇ
ଚରଣ ଧୂଳି ନେବା ଛଳରେ ଗୁଳି ଦେବ ଛାଇ !

ମୁଁ କ'ଣ ଗ୍ରହିଁଥିଲି ?
ଯେଉଁ ପଡ଼ୋଶୀରେ "ପଞ୍ଚଶୀଳ" ବାଣୀ ବୋଲି
ଭାଇ ପରି କରିଥିଲି ଆପଣାର
ସେହି ମୋ ପଡ଼ୋଶୀ ଭାଇ
ମୋ ଦେଶର ବିସ୍ତୃତ ଅଞ୍ଚଳ
ଛଳେ ବଳେ କବଳିବ ଆପଣାର କହି !

ମୁଁ କ'ଣ ଗ୍ରହିଁଥିଲି ?
ଏ ଦେଶର ସାଧାରଣ ନାଗରିକ
ଭୋଗୁଥିବ ବନ୍ୟା, ବାତ୍ୟା, ମରୁଡ଼ି ବା ଭୂକମ୍ପର କୋପ !
ଅନ୍ୟ ପକ୍ଷେ ମୋ ଦେଶର ପୁଞ୍ଜିପତି
ଗଢ଼ୁଥିବ ନିତିପ୍ରତି
ନୂଆ ନୂଆ କଙ୍କ୍ରିଟ୍ ସାମ୍ରାଜ୍ୟ !

ସହରର ରାସ୍ତା କଡ଼େ ଅବା ପଲ୍ଲୀ କୋଣେ
କେତେ କେତେ ପୁଅ ଝିଅ ମରୁଥିବେ, ସଢ଼ୁଥିବେ
ନପାଇ ଟିକିଏ କ୍ଷୀର ବା ଔଷଧ;
ପାଠପଢ଼ା କାହିଁ ବା ଚିନ୍ତିବେ ତାଙ୍କ ବାପ ମାଆ !
ଅନ୍ୟ ଆଡ଼େ, ମୋ ଧନୀ ଭାଇର ପିଲା
ଯାଉଥିବେ ପଢ଼ିବାକୁ ପ୍ୟାରିସ୍, ଲଣ୍ଡନ ଅବା ଆମେରିକା !
ଖୋଉଥିବେ "ଟମି" ବା "ପପି"ଙ୍କୁ
ବିଦେଶରୁ ଆଣିଥିବା ଟନିକ୍ ବିସ୍କୁଟ୍ !

ମୁଁ ତ ଗ୍ରହିଁ ନଥିଲି
ମୋ ଦେଶର ଭାଇ ଭୁଲି ଭାରତୀୟ ଭାବ
ମଣିବ ନିଜକୁ ସିଏ ହିନ୍ଦୁ, ମୁସଲମାନୀ, ଶିଖ ବା ଖ୍ରୀଷ୍ଟାନୀ,
ଉତ୍କଳୀ, କେରଳୀ ଅବା ଆସାମୀ କି ରାଜସ୍ଥାନୀ !

ମୁଁ ତ କେବେହେଲେ ଗ୍ରହିଁ ନାହିଁ
ଭାଇ ତା'ର ଆପଣା ଭାଇରେ ବଧିବାକୁ
ଆସାମେ, ପଞ୍ଜାବେ ଅବା କାଶ୍ମୀର ଭୂମିରେ !
ତେବେ କୁହ ଅଗଷ୍ଟ ପନ୍ଦର !
ଏ କି ଅବଦାନ ତୁମେ ଦେଉଅଛ ମୋତେ ·
ଏ କି ହୀନିମାନ ଭାବ ଘୋଟିଅଛି ଭାରତ ବର୍ଷରେ !

ଏବେ କିନ୍ତୁ ଘେନ ହେ ମିନତି
ଏ ଦେଶରୁ ଜରା, ବ୍ୟାଧି, ଉଚ୍ଚ ନୀଚ
ଦୁଃଖ କଷ୍ଟ, ହିଂସା ଦ୍ୱେଷ ସବୁ ଦୂର କରି
ଗଢ଼ିଦିଅ ଶସ୍ୟ ଶ୍ୟାମ ଶାନ୍ତ ସୁଶୀଳା
ଏକ ଅଖଣ୍ଡ ଭାରତ !

ଅବସରପ୍ରାପ୍ତ ମୁଦ୍ରଣ ଉପନିର୍ଦ୍ଦେଶକ,
୪୨, ଜୟଦୁର୍ଗା ନଗର,
ଭୁବନେଶ୍ୱର-୭୫୧୦୦୬

# ମହାନ୍ ଭାରତୀୟ

* ଗୋକୁଳ ଚନ୍ଦ୍ର ପଟ୍ଟନାୟକ *

ବିଶ୍ୱ ବିଖ୍ୟାତ ପୁସ୍ତକ **"The mother"**ରେ ନୋବେଲ ପ୍ରାଇଜ୍ ବିଜେତା ପାର୍ଲି ବକ୍ "ସାହସିକତାର" ଅନୁଶୀଳନ କରି ଏହାକୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରିଛନ୍ତି, (କ) ଶାରୀରିକ ସାହସ (ଆତ୍ମରକ୍ଷା ପାଇଁ ଯାହା ଉଦ୍ଦିଷ୍ଟ) (ଖ) ଯେଉଁ ନିସ୍ୱାର୍ଥପର ଯେଁ। ଆତ୍ମୀୟ ବନ୍ଧୁ ବା ପଡ଼ୋଶୀ ବା ସାଙ୍ଗ ସାଥୀ କିମ୍ବା ଦେଶ ବିପଦରେ ପଡ଼ିଥିଲେ ରକ୍ଷା କରିବା ଦିଗରେ ଯାହା ଆବଶ୍ୟକ ପଡ଼ିଥାଏ (ଗ) ନୈତିକ ସାହସ,– ଯାହାକି ଯେତେ କ୍ଷମତାଶାଳୀ ବ୍ୟକ୍ତି ହୋଇଥାଆନ୍ତୁ ନା କାହିଁକି, ତାଙ୍କର ଅନୁଚିତ, ଅସଙ୍ଗତ ଓ ଆସ୍ପର୍ଦ୍ଧାପୂର୍ଣ୍ଣ ଉକ୍ତି ବିରୋଧରେ ଭବିଷ୍ୟତରେ ଯେତେ ଆଶଙ୍କା ଥିଲେ ମଧ୍ୟ ସାହସିକ ବ୍ୟକ୍ତି ସ୍ୱର ଉତ୍ତୋଳନ କରି ସତ୍ୟ ଓ ଠିକ୍ କଥା ଦୃଢ଼ତାର ସହିତ ନିର୍ଭୀକ ଭାବେ ଶୁଣାଇଥାଆନ୍ତି ।

ବିଭିନ୍ନ କ୍ଷେତ୍ରରେ ଏହି ନୈତିକ ସାହସର ପରାକାଷ୍ଠା ପ୍ରଦର୍ଶନ କରିଥିବା ଦେଶର କେତେକ ବରପୁତ୍ରଙ୍କ ମଧ୍ୟରୁ ଜାତୀୟ ମୁକ୍ତିପଟରେ ଉଦ୍ଭାସିତ କଳିଙ୍ଗ କେଶରୀ ସ୍ୱନାମଧନ୍ୟ ବୈମାନିକ ଶ୍ରୀଯୁକ୍ତ ବିଜୁ ପ  ନାୟକଙ୍କ ଘଟଣା ବହୁଳ ଜୀବନର ଗୋଟିଏ ଘଟଣା ବାସ୍ତବରେ ପ୍ରଣିଧାନଯୋଗ୍ୟ ।

ଅବିଭାଜ୍ୟ ଭାରତର ଉତ୍ତର–ପଶ୍ଚିମ ସୀମାନ୍ତ ପ୍ରଦେଶ ବର୍ତ୍ତମାନ ପାକିସ୍ଥାନର ଅନ୍ତର୍ଭୁକ୍ତ । ସେଠାର ଘନ ପାର୍ବତ୍ୟ ଅଞ୍ଚଳ 'କ୍ୱେଟା'ରେ ଇଂରେଜ ଶାସନ ତଥା ତଦାନୀନ୍ତନ ସ୍ଥାନୀୟ ଶାସନ ବିରୋଧରେ ପ୍ରବଳ ଜନ ବିଦ୍ରୋହ ଲାଗିରହିଥାଏ । ବିଦ୍ରୋହ ଏପରି ତୀବ୍ର ଘନଘଟା ସୃଷ୍ଟି କରିଥିଲାଯେ ତତ୍କାଳୀନ ରାଜପ୍ରାସାଦ ବିଧ୍ୱସ୍ତ ହୋଇ ଲଣ୍ଡନସ୍ଥ ବ୍ରିଟିଶ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ରାଣୀ ଭିକ୍ଟୋରିଆ ଓ ପ୍ରଧାନମନ୍ତ୍ରୀ ଆଟଲିଙ୍କ ନିର୍ଦ୍ଦେଶ ମତେ ଲର୍ଡ଼ ଓ୍ୱାଭେଲ ବ୍ରିଟିଶ ସାମ୍ରାଜ୍ୟର ସ୍ୱତନ୍ତ୍ର ଦୂତ ଭାବରେ ବିଶେଷ କ୍ଷମତାର ଅଧିକାରୀ ହୋଇ ବିଦ୍ରୋହ ଦମନ କରିବା ପାଇଁ ଦିଲ୍ଲୀ ମଧ୍ୟ ଦେଇ କ୍ୱେଟା ଅଭିମୁଖେ ପ୍ରେରିତ ହେଲେ । ଲର୍ଡ଼ ଓ୍ୱାଭେଲ ବିମାନ ମାର୍ଗରେ ଆସି ଦିଲ୍ଲୀରେ ଅବତରଣ କଲେ । ସେଠାରେ ସେ ଜାଣିବାକୁ ପାଇଲେ ଯେ ଦିଲ୍ଲୀଠାରୁ କ୍ୱେଟା ପର୍ଯ୍ୟନ୍ତ ବିପଦପୂର୍ଣ୍ଣ ଉଚ୍ଚ ଶିଖରୀଯୁକ୍ତ ଘନ ଜଙ୍ଗଲ ଓ ପାର୍ବତ୍ୟ ଦୁର୍ଗମ ଅଞ୍ଚଳରେ ପରିପୂର୍ଣ୍ଣ । ଏହାର ଆକାଶ ମାର୍ଗରେ ନିରାପଦ ବିମାନ ଚାଳନ କରିବା ବୈମାନିକମାନଙ୍କ ସମ୍ମୁଖରେ ସାହସିକତା ତଥା ଚାଳନାପଟୁତାର ଏକ ଆହ୍ୱାନ ଥିଲା । ସେତେବେଳେ ଦିଲ୍ଲୀରେ ଅବସ୍ଥାପିତ ଦକ୍ଷ ବୈମାନିକମାନଙ୍କ ମଧ୍ୟରେ ଇଂରେଜ, ଫରାସୀ, ଜର୍ମାନ୍ ଇତ୍ୟାଦି ଅନ୍ୟାନ୍ୟ ପାଶ୍ଚାତ୍ୟ ଉନ୍ନତ ଦେଶର ବ୍ୟକ୍ତି ବି[illegible] ପାଇଥିଲେ । କିନ୍ତୁ ବିମାନଚାଳନା ଲିପିବଦ୍ଧ ବିବରଣୀ **(Flight Record)** ମଧ୍ୟରେ ଭାରତୀୟ ବୈମାନିକ ବିଜୁ ପ  ନାୟକଙ୍କ ନାମ ସର୍ବାଗ୍ରେ ବିଜୟ ମଣ୍ଡିତ କରି ବହୁ ବର୍ଷ ପର୍ଯ୍ୟନ୍ତ ଅମ୍ଳାନ ରହିଥିଲା । ସ୍ୱାଭାବିକ ଭାବେ ଲର୍ଡ଼ ଓ୍ୱାଭେଲ ଶୁଣିଲେ ତାଙ୍କୁ ସର୍ବଶ୍ରେଷ୍ଠ ବୈମାନିକ ନିରାପଦରେ ଅପେକ୍ଷାକୃତ ଅଳ୍ପ ସମୟରେ ଯେପରି କ୍ୱେଟାକୁ ଉଡ଼ାଇ ନେବେ ଏବଂ ତା ପୂର୍ବରୁ ତାଙ୍କୁ ସେ ବ୍ୟକ୍ତିଗତ ଭାବେ ପ୍ରତ୍ୟକ୍ଷରେ ଦେଖିବାକୁ ମଧ୍ୟ ଇଚ୍ଛାକଲେ । ବିଜୁବାବୁଙ୍କୁ ଦେଖାଇବାକୁ ଭାରତ ସରକାରଙ୍କର ଦେଶରକ୍ଷା ବିଭାଗ ସଚିବ ମହାମାନ୍ୟ ଓ୍ୱାଭେଲ ସାହେବଙ୍କୁ ପଥ ପ୍ରଦର୍ଶନ କଲେ । ସେତେବେଳକୁ ଅଗ୍ରଣୀ ବୈମାନିକ ବିଜୁବାବୁ ବିମାନଘାଟୀର କଫି ହାଉସ୍‌ରେ କଫି ପାନ କରୁଥିଲେ । ଅନତି ଦୂରରୁ ଆଙ୍ଗୁଳି ନିର୍ଦ୍ଦେଶ କରି ସଚିବ ବିଜୁବାବୁଙ୍କୁ ଦେଖାଇ ତାଙ୍କ ବିଷୟରେ କହିଲାବେଳେ ଲର୍ଡ଼ ଓ୍ୱାଭେଲ୍ ତତ୍‌କ୍ଷଣାତ୍ ପ୍ରଶ୍ନ କରିଥିଲେ, "ତାଙ୍କର ଜାତୀୟତାः କ'ଣ" ? ଉତ୍ତରରେ ସଚିବ କହିଲେ 'ଇଣ୍ଡିଆନ' । ଘୃଣା ବ୍ୟଞ୍ଜକ ଦୃପ୍ତ କଣ୍ଠରେ ଓ୍ୱାଭେଲ୍ ପ୍ରତ୍ୟୁତ୍ତର ଦେଲେ– "ଡ୍ୟାମ୍ ଇଣ୍ଡିଆନ" !

ଏହି ଅରୁଚିକର କଥୋପକଥନ ଜାତୀୟପ୍ରେମୀ ସ୍ୱାଧୀନଚେତା ବିଜୁ ବାବୁଙ୍କର ସହସା ଧ୍ୟାନ ଆକର୍ଷଣ କଲା । ସେ ବିସ୍ମିତ ହେବା ସଙ୍ଗେ ସଙ୍ଗେ ଏହି ଆକ୍ଷେପୋକ୍ତି ତାଙ୍କର କର୍ଣ୍ଣ ଗହ୍ୱରରେ ଅସହ୍ୟ ଶିହରଣ ସୃଷ୍ଟି କରିଥିଲା । ସେହି ମୁହୂର୍ତ୍ତରେ ସେ ଉପଯୁକ୍ତ ପ୍ରତିଶୋଧ ନେବା ପାଇଁ ପ୍ରତିଜ୍ଞାବଦ୍ଧ ହେଲେ ହୀନମନା ଗର୍ବୀ ଓ୍ୱାଭେଲ୍ ସାହେବ ବିରୋଧରେ । କିଛିକ୍ଷଣ ପରେ ନିଜ ଜୀବନ ରକ୍ଷାର ଲାଳସାରେ ପ୍ରଲୁବ୍ଧ ଓ ପ୍ରକୃତିସ୍ଥ ହୋଇ ଓ୍ୱାଭେଲ ପରିଶେଷରେ ସେଇ ବିଜୁବାବୁଙ୍କୁ ହିଁ ଖୋଜିଲେ ।

ଏହା ବହୁ ବର୍ଷ ତଳର ଘଟଣା । ଏହି ରୋମାଞ୍ଚକର ଆତ୍ମାଭିମାନ ତଥା ଆତ୍ମ ମର୍ଯ୍ୟାଦାର ପ୍ରତୀକ ବୀରୋଚିତ କାର୍ଯ୍ୟ ସ୍ୱାଧୀନଚେତା ବିଜୁବାବୁଙ୍କ ଅମ୍ଳାନ କାହାଣୀ ସ୍ୱାଧୀନତା ଦିବସ ଅବସରରେ ସ୍ମରଣ କରିବାର ପ୍ରକୃଷ୍ଟ ସମୟ ଯାହାକି ଭାରତୀୟ ଯୁବ ଶକ୍ତିକୁ ହୀନମନ୍ୟତା ତ୍ୟାଗ କରି ଅଗ୍ରସର ହେବାକୁ ପ୍ରେରଣା ଯୋଗାଇବ । ପ୍ରାୟ ତିନି ଦଶନ୍ଧି ପୂର୍ବେ ତତ୍କାଳୀନ କଲିକତାଠାରୁ ପ୍ରକାଶିତ ଇଂରାଜୀ ଦୈନିକ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ଼ ପତ୍ରିକାରୁ ଏହା ଅବଗତ ହୋଇ ଆତ୍ମ ବିସ୍ମୃତ ହେବା ସଙ୍ଗେ ସଙ୍ଗେ ବର୍ତ୍ତମାନ ସମସ୍ତ ଯୁବକ ଯୁବତୀମାନଙ୍କୁ ଜଣାଇବାର ପ୍ରବଳ ଆଗ୍ରହ ଆଜି ଉପସ୍ଥିତ ହେବାକୁ ଯାଉଛି ।

ଦିଲ୍ଲୀ ପାଲାମ ବିମାନଘାଟୀରୁ ବହୁ ପରୀକ୍ଷା ନିରୀକ୍ଷା ପରେ ଯେତେବେଳକୁ ସର୍ବାଧୁନିକ ବିମାନରେ ଆରୋହଣ କରି ପରାକ୍ରମଶାଳୀ ଓ୍ବାଭେଲ ସାହେବ କ୍ୱେଟା ଅଭିମୁଖେ ଯାତ୍ରା କଲେ ବୈମାନିକ ବିଜୁ ପ ନାୟକଙ୍କ ତତ୍ତ୍ୱାବଧାନରେ । ରନ୍‌ୱେ ଛାଡ଼ି ବିମାନଟି ଚକ୍ଷୁକାରରେ ଘୂର୍ଣ୍ଣାୟମାନ ହୋଇ ଘୋର-ଘୋର ପ୍ରଚଣ୍ଡ ଶବ୍ଦରେ ଗଗନ ପବନ ନିନାଦିତ କରି ଆକାଶ ମାର୍ଗକୁ ନିକ୍ଷେପ ହୋଇ କ୍ରମଶଃ କ୍ଷୁଦ୍ରରୁ କ୍ଷୁଦ୍ରତର ଦୃଷ୍ଟିଗୋଚର ହେଲା । ପରିଶେଷରେ ସମାନ୍ତରାଳ ଗତିରେ ବିରାଟକାୟ ବିମାନ ତୀକ୍ଷ୍ଣ ବେଗରେ ଗତି କରି ସ୍ୱାଭାବିକ ଅବସ୍ଥାକୁ ଯେତେବେଳେ ଆସିଲା, ବିଜୁବାବୁ ସବୁ ଯାନ୍ତ୍ରିକ ପଦ୍ଧତି ପ୍ରୟୋଗ କରିସାରି ନିରାପଦ ବ୍ୟବସ୍ଥାରେ ନାଭିଗେଟ୍ର ଇତ୍ୟାଦି ସହଯୋଗୀମାନଙ୍କ ଦାୟିତ୍ୱରେ ଛାଡ଼ି ପୂର୍ବ ପରିକଳ୍ପିତ ଯୋଜନା ଅନୁସାରେ ଦଣ୍ଡାୟମାନ ହେଲେ । ସେତେବେଳେ ଓ୍ବାଭେଲ କୌଣସି ଆଶଙ୍କା ନକରି ପାର୍ଶ୍ୱବର୍ତ୍ତୀ ବାତାୟନରେ ପ୍ରକୃତିର ଆକର୍ଷଣୀୟ ଶୋଭାସବୁକିମା ଉପଭୋଗ କରି ନିର୍ଲିପ୍ତ ଭାବରେ ବସିଥାନ୍ତି । ହଠାତ୍ ବୈମାନିକ ବିଜୁବାବୁ ଅପୂର୍ବ ସାହସିକତା ସହ ତାଙ୍କ ନିକଟକୁ ଦ୍ରୁତ ପଦକ୍ଷେପରେ ଅଗ୍ରଗତି କରି ତାଙ୍କୁ ସ୍ପର୍ଶୀଭୂତ କରି ଗମ୍ଭୀର କଣ୍ଠରେ କହିଲେ "କୁଇଟ୍ ଇଣ୍ଡିଆନ କଣ୍ଟ୍ରି" ପ୍ରତ୍ୟାହାର କର । ଅସୀମ କ୍ଷମତାସମ୍ପନ୍ନ ଓ୍ବାଭେଲ କିଛି ସମୟ ଅପ୍ରତିଭ ଇତସ୍ତତଃ ହୋଇ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲେ । ପୁନର୍ବାର ବିଜୁବାବୁ ଅଙ୍ଗୁଳି ନିର୍ଦ୍ଦେଶ କରି ଦୃଢ଼ଭାବେ ପ୍ରକାଶ କରିବା ପାଇଁ ଦାବୀ ଉପସ୍ଥାପନ କରିବାରୁ ଗର୍ବ ଓ କ୍ରୋଧରେ ଉନ୍ମତ୍ତ ଓ୍ବାଭେଲ୍ ବ୍ୟାକ୍ ପକେଟରୁ ପିସ୍ତଲ ବାହାର କରି ବିଜୁବାବୁଙ୍କୁ ଭୟଭୀତ କରାଇବାକୁ ଅପଚେଷ୍ଟା କଲେ । ବିଜୁବାବୁଙ୍କ ପୁନର୍ବାର ଦମ୍ଭୋକ୍ତି......... ଦେଖନ୍ତୁ, ସାବଧାନ୍ ! ବର୍ତ୍ତମାନ ଆପଣଙ୍କର ଅମୂଲ୍ୟ ଜୀବନ ସେଇ ଇଣ୍ଡିଆନ ହାତରେ । ଯଦି ଆପଣ ନିର୍ବିଶ୍ୱରରେ ଗୁଳି ମାରିବେ ତେବେ ମନେରଖନ୍ତୁ ଆପଣଙ୍କ ସହ ଏଥିରେ ଥିବା ସମସ୍ତ ବିମାନଯାତ୍ରୀ ନିଶ୍ଚିତ ଧ୍ୱଂସ ପାଇବେ । ଏହି ବିଷମ ପରିସ୍ଥିତିକୁ ଏଡ଼ାଇବାକୁ ଯାଇ ମର୍ମାହତ ଓ୍ବାଭେଲ୍ ଅବନତ ମସ୍ତକରେ ପିସ୍ତଲକୁ ନିମ୍ନଗାମୀ କରି ଯଥାସ୍ଥାନରେ ରଖିବାକୁ ବାଧ୍ୟ ହେଲେ ଏକ ନିରୀହ ସରଳ ଶିଶୁ ପରି । କିନ୍ତୁ ଲଜ୍ଜା ଓ ଅପମାନରେ ଆତିଶଯ୍ୟ ତାଙ୍କୁ କ୍ରୋଧାଗ୍ନିରେ ଜର୍ଜରିତ କଲା । ବିଜୁବାବୁ ନିଜ ସ୍ଥାନକୁ ଫେରି ଆସି କର୍ତ୍ତବ୍ୟରେ ମନୋନିବେଶ କଲେ । ବିମାନ ନିରବଚ୍ଛିନ୍ନ ଗତି କରି ଚାଲିଥାଏ । ନିର୍ବିଘ୍ନରେ ଓ ନିର୍ଦ୍ଦିଷ୍ଟ ସମୟରେ ବିମାନ କ୍ୱେଟାରେ ଅବତରଣ କଲା ।

ବହୁ ଆଗରୁ ବେତାର ଯନ୍ତ୍ରରେ ସମ୍ବାଦ ପାଇ ସେଠାକାର ଅପେକ୍ଷାରତ ସଶସ୍ତ୍ର ପୋଲିସ୍‌ବାହିନୀ ବିମାନଘାଟୀ ରନ୍‌ୱେରେ ଅବତରିତ ବିମାନ ନିକଟକୁ ଆସି ମହାମାନ୍ୟ ଅତିଥିଙ୍କୁ ମିଲିଟାରୀ କାଇଦାରେ ସମ୍ମାନ ଜଣାଇ ସାଲ୍ୟୁଟ୍ ନେଲେ । ସେମାନଙ୍କ ସଙ୍ଗରେ କିଛି ପଥ ଅଗ୍ରସର ହେଲା ପରେ ବିଷଣ୍ଣ ଓ କ୍ଷୁବ୍ଧ ଓ୍ବାଭେଲ୍ ହଠାତ୍ ମୁଖ ପଶ୍ଚାତ କରି ଅଙ୍ଗୁଳି ନିର୍ଦ୍ଦେଶ ପୂର୍ବକ ସିଂହ ଗର୍ଜନ ସଦୃଶ କଠୋର ଆଦେଶ ଦେଲେ "Arrest that bloody pilot" ତତ୍‌କ୍ଷଣାତ୍ ଏସ୍କର୍ଟ ଫଉଜ ପାଇଲଟଙ୍କୁ ଗିରଫ କରିବା ପାଇଁ କ୍ଷିପ୍ର ପଦକ୍ଷେପରେ ଅନୁଧାବନ କଲେ । ଉଦ୍ୟମ ବ୍ୟର୍ଥ ହେଲା । ଓ୍ବାଭେଲ୍ ଅବାକ୍ ହୋଇ ରହିଲେ । ବିସ୍ଫାରିତ ନେତ୍ରରେ ଚାହିଁଥାନ୍ତି–ବିମାନ ଆକାଶ ମାର୍ଗରେ ।

ଧନ୍ୟ ସେ ପାଇଲଟ୍ । ଧନ୍ୟ ତାଙ୍କ ଚାଳନା ପଟୁତା । ଯେଉଁ ଅସାଧାରଣ ସାହସ ପ୍ରଦର୍ଶନ କରି ଅସାମାନ୍ୟ କୌଶଳ ଓ ଦକ୍ଷତା ଦ୍ୱାରା ଅପ୍ରତିଦ୍ୱନ୍ଦ୍ୱୀ ବୈମାନିକ ବିଜୁବାବୁ ବିଦ୍ରୋହୀ ସୈନ୍ୟ ପରିବେଷ୍ଟିତ ଇଣ୍ଡୋନେସିଆର ତତ୍‌କାଳୀନ ରାଷ୍ଟ୍ରପତି ସୋକର୍ଣ୍ଣୋଙ୍କୁ ଉଦ୍ଧାର କରି ବୀରତ୍ୱର ଧ୍ୱଜା ଉଡ଼ାଇ ଥିଲେ ଓ ଇଣ୍ଡୋନେସିଆର ସ୍ୱାଧୀନତା ପ୍ରାପ୍ତିରେ ସହାୟକ ହୋଇଥିଲେ ଏବଂ ଯାହା ପାଇଁ ଆଜି ସେଠାରେ ସର୍ବୋଚ୍ଚ ସମ୍ମାନ 'ଭୂମି ପୁତ୍ର'ରେ ଭୂଷିତ ହେଲେ ତାହା ଥିଲା ଆଉ ଏକ ନିଦର୍ଶନ ମାତ୍ର ।

ଦିଲ୍ଲୀ ବିମାନଘାଟୀକୁ ଫେରି ବିମାନରୁ ଅବତରଣ କଲାପରେ ଆଗରୁ ବେତାର ବାର୍ତ୍ତା ପାଇ ପ୍ରସ୍ତୁତ ହୋଇ ରହିଥିବା ପୋଲିସ ବିଜୁବାବୁଙ୍କୁ ଗିରଫ କଲେ । ଶେଷରେ ଦିଲ୍ଲୀ କୋର୍ଟରେ ତାଙ୍କର ବିଚାର ହେଲା । ବିଚାରପତି ଥାଆନ୍ତି ଜଣେ ଇଂରେଜ ବ୍ୟକ୍ତି । ଲର୍ଡ଼ ଓ୍ବାଭେଲ୍ ମଧ୍ୟ କୋର୍ଟରେ ଜମାନବନ୍ଦୀ ଦେଲେ । ବିଚାରପତି ବିଜୁବାବୁଙ୍କୁ ତାଙ୍କ କ୍ରୋଧର କାରଣ ଦର୍ଶାଇବାକୁ ପ୍ରଶ୍ନ କରିବାରୁ ସେ ପ୍ରଥମେ ନିର୍ଦ୍ଦୋଷ ବୋଲି ପରିଚୟ ଦେଇ ତାଙ୍କର ଜାତୀୟତା ପ୍ରତି ଅବମାନନା ସୂଚକ ଆକ୍ଷେପୋକ୍ତି ତାଙ୍କୁ ଏପରି ଉତ୍ତେଜିତ କରାଇଲା ଏବଂ ତାହାକୁ ପ୍ରତିହତ କରିବା ପାଇଁ ସେ ନୈତିକ ସାହସର ପୌରୁଷପୂର୍ଣ୍ଣ କାର୍ଯ୍ୟ କଲେ ।

ପରିଶେଷରେ ଏହି ସତ୍ୟ ନାଟକର ଯବନିକା ପାତ ହେଲା, ବିଜ୍ଞ ନିରପେକ୍ଷ ବ୍ରିଟିଶ୍ ବିଚାରପତିଙ୍କ ଅପୂର୍ବ ଆଶ୍ଚର୍ଯ୍ୟଜନକ ନିର୍ଦ୍ଦେଶ ତଥା ଆଦେଶରେ ।

ଉଭୟଙ୍କୁ ସେ ଦିନର କୋର୍ଟ ସରିବା ଯାଏଁ ଜେଲ୍ ଦଣ୍ଡ ଦିଆଗଲା । **Both are sentenced till the rise of the Court on that day.** ଏହି ଗୁରୁତ୍ୱପୂର୍ଣ୍ଣ ରାୟ ଘୋଷଣା କରି ବିଚାରପତି ଆସନ ପରିତ୍ୟାଗ କଲେ । ସେହି ଉଚ୍ଚମନା ବିଜୁବାବୁ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ବହୁଥର କାରାବରଣ କରିଛନ୍ତି । ଛାତ୍ର ଜୀବନରେ ବିମାନ ଚାଳନାକୁ ଛିନ୍ନ କରି ବେଣାଘାତ ପାଇ ତାଙ୍କର ଦୃଢ଼ ମନୋବଳ ଦ୍ୱାରା ଏପରି ଶ୍ରେଷ୍ଠ ପାଇଲଟ ହୋଇ ପାରିଲେ । ସାଇକେଲରେ କଟକରୁ ପେଶାୱର ଯାଇ ପାରିଥିଲେ । ଗୋପବନ୍ଧୁଙ୍କ ବନ୍ୟାକାଳୀନ ଯାଗ ସମୟରେ ପାଣି ଭିତରକୁ ଡେଇଁପଡ଼ି ଛତାଟି ପୁନରୁଦ୍ଧାର କରି ଉତ୍କଳମଣିଙ୍କ "ଭାରତ ମାତାର ବରପୁତ୍ର ହେବୁ" ବୋଲି ଯେଉଁ ଆଶିଷ ପାଇଥିଲେ, ଆଜି ସେ ଦେଶର ଜାତୀୟ ସ୍ତରରେ ଜଣେ ପ୍ରଧାନତମ ନେତା ଓ ସଂସ୍କାରକ ଏକଥା ଅନସ୍ୱୀକାର୍ଯ୍ୟ । ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ବିଜ୍ଞାନର ଲୋକପ୍ରିୟତା ପାଇଁ କଳିଙ୍ଗ ପ୍ରାଇଜ୍ ଏବଂ ବିଭିନ୍ନ ଦେଶର ଉଚ୍ଚ ପଦାଧିକାରୀମାନଙ୍କ ସହ ସମ୍ପର୍କ ରଖି ସେ ବହୁ ଭାବରେ ବିଦିତ । ଏସବୁ ତାଙ୍କର ଆତ୍ମ ବିଶ୍ୱାସ ଜନିତ ସାହସିକତା ଆତ୍ମ ଶକ୍ତିରେ ରୂପାୟିତ ଓ ପରିପୁଷ୍ଟ ହୋଇଛି । ବୟସରେ ତାଙ୍କ ନିକଟରେ ଆଜି ବାର୍ଦ୍ଧକ୍ୟ ହାର ମାନିଛି ।

ବାସ୍ତବିକ୍ ବିଶ୍ୱ ବିଖ୍ୟାତ ଇଂରେଜ ଔପନ୍ୟାସିକ ଶ୍ରୀ ଆଲଡ଼ସ୍ ହକ୍‌ସଲେ ବିଜୁବାବୁଙ୍କ ସାହସ ସମ୍ପର୍କରେ କହିଥିଲେ "*If one begins to write about the adventures of Biju Patnaik, perhaps it will fill in a book.*" ଏଥିରୁ ସ୍ପଷ୍ଟ ସୂଚିତ ହୁଏ ବିଜୁବାବୁଙ୍କ ସାହାସିକ ପ୍ରତିଭା ବିଶ୍ୱବ୍ୟାପୀ । ସେ କୁହନ୍ତି ଇଣ୍ଡିଆନ ହୁଅନ୍ତି ସେ ହେଉଛନ୍ତି ନୋବଲ ଇଣ୍ଡିଆନ୍, ମହାନ୍ ଭାରତୀୟ ।

ପ୍ରଧାନ ଶିକ୍ଷକ,
ସରକାରୀ ବିଦ୍ୟାଳୟ, ରାୟବୁନାଗଡ଼ା ।

# ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା : ଏକ ସ୍ମୃତିଚାରଣ

* ଫଣୀନ୍ଦ୍ର ଭୂଷଣ ନନ୍ଦ *

**ପ୍ରାକ୍‌କଥନ :**

ଊନବିଂଶ ଶତାବ୍ଦୀ ସାରସ୍ୱତ କ୍ଷେତ୍ରକୁ ମର୍ଯ୍ୟାଦାବନ୍ତ ସ୍ଥାନ ଦେବାରେ ନିଜ ପ୍ରତିଭାକୁ ବିନିଯୋଗ କରିଥିବା ଅନେକ ସାଧକ ଆଜି ବିସ୍ମୃତ । ସେ ସମସ୍ତଙ୍କ ଓଡ଼ିଆ ସାହିତ୍ୟ ଓ ସଂସ୍କୃତ ସାହିତ୍ୟକୁ ନିଜ ଦାନରେ ପରିପୁଷ୍ଟ କରିଥିବା ଏକ ପ୍ରଚଣ୍ଡ ପ୍ରତିଭା ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା । ସେ ସାହିତ୍ୟିକ ନରପତି ଶ୍ରୀଲ୍ ବାସୁଦେବ ସୁଦଳ ଦେବ ତଥା ଖଣ୍ଡପଡ଼ାର ସାମନ୍ତ ଚନ୍ଦ୍ରଶେଖରଙ୍କର ଶିକ୍ଷା ଗୁରୁ ଥିଲେ । ସଂସ୍କୃତରେ ଆନନ୍ଦ ଦାମୋଦର ଚମ୍ପୂ, 'ବାମଣ୍ଡା ରାଜ ବଂଶାନୁ ଚରିତ' "ଚିତ୍ରୋତ୍ପଳା ଚମ୍ପୂ" 'ବାମଣ୍ଡା ରାଜ ବଂଶାନୁଚରିତ' "ଚିତ୍ରୋତ୍ପଳା ଠଠ ପୂ" ପ୍ରଭୃତି ଉତ୍କୃଷ୍ଟ କାବ୍ୟର ସେ ରଚୟିତା । ଏତଦ୍‌ବ୍ୟତୀତ ,ବିଭିନ୍ନ ସମୟରେ ସାହିତ୍ୟ ସଭାମାନଙ୍କରେ ସେ ଯେଉଁ ସାରଗର୍ଭକ ଭାଷଣ ଦେଇଛନ୍ତି ତହିଁରୁ ତାଙ୍କର ସାରସ୍ୱତ ପ୍ରୀତିର ନିଦର୍ଶନ ସ୍ପଷ୍ଟ ହୁଏ ।

ପଣ୍ଡିତ ବଡ଼ପଣ୍ଡାଙ୍କ ଅନନ୍ୟ ପାଣ୍ଡିତ୍ୟ ସତ୍ତ୍ୱେ ସେ ଓଡ଼ିଶାର ବିସ୍ମୃତ ପ୍ରତିଭା ।·ତାଙ୍କ ପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନ ହୋଇ ନଥିବାରୁ ନୀଳମଣି ବିଦ୍ୟାରତ୍ନ ଦୁଃଖ ପ୍ରକାଶ କରି କହନ୍ତି, "xxx ବର୍ତ୍ତମାନ ଓଡ଼ିଶାରେ ଭୁବନେଶ୍ୱର ବଡ଼ପଣ୍ଡାଙ୍କ ତୁଲ୍ୟ ସଂସ୍କୃତ ସାହିତ୍ୟିକ ବ୍ୟକ୍ତି ନାହିଁ କହିଲେ ଚଳେ । xxx ଏ ରତ୍ନର ଜ୍ୟୋତି ଏତେ ହୀନ ହୋଇ ଅଛି ଯେ "ଉତ୍କଳ ପୁତ୍ର" ଓଡ଼ିଶାରେ ଦୁଇଥର ଗଣ୍ଡ କରି ମଧ୍ୟ ଏହାଙ୍କ ଦେଖା ପାଇ ନାହାନ୍ତି....... ।"(୧)

ଉତ୍କଳ ଭ୍ରମଣଂ କାବ୍ୟରେ ଫକୀରମୋହନ ବଡ଼ପଣ୍ଡାଙ୍କ ନାମୋଚ୍ଚାରଣ କରି ନଥିବାରୁ ବିଦ୍ୟାରତ୍ନଙ୍କ ଏ ଖେଦୋକ୍ତି ।

ପଣ୍ଡିତ ମହୋଦୟ ତତ୍‌କାଳୀନ ତିଗିରିଆ ରାଜ୍ୟର ହରିହର ପୁର ଗ୍ରାମରେ ୧୮୨୭ ଖ୍ରୀ: ଫାଲ୍‌ଗୁନ ଅମାବାସ୍ୟା ଦିନ ଜନ୍ମ ଗ୍ରହଣ କରିଥିଲେ ଏବଂ ଦୀର୍ଘ ନବେ ବର୍ଷର ଜୀବନ କାଳ ମଧ୍ୟରେ ସାହିତ୍ୟାଲୋଚନା ଏବଂ ସଂସ୍କୃତ ଚର୍ଚ୍ଚା ଭିତରେ ବ୍ୟସ୍ତ ରହି ୧୯୧୭ ଖ୍ରୀ ଆଷାଢ଼ କୃଷ୍ଣ ଏକାଦଶୀ ଦିନ ଇହଲୀଳା ସାଙ୍ଗ କରିଥିଲେ ।

**ସାରସ୍ୱତ ପ୍ରୀତି :**

ଜ୍ୟୋତିର୍ବିଦ ସାମନ୍ତ ଚନ୍ଦ୍ରଶେଖର ଏହାଙ୍କଠାରୁ ଦର୍ଶନଶାସ୍ତ୍ର ଅଧ୍ୟୟନ କରିଥିଲେ । ଏହାଙ୍କ ପାଣ୍ଡିତ୍ୟରେ ଆକୃଷ୍ଟ ହୋଇ ବାମଣ୍ଡା ରାଜା ସୁଦଳଦେବ ତାଙ୍କୁ ନିଜ ରାଜ୍ୟକୁ ନିମ... ବି... ସଭା ପଣ୍ଡିତ ତଥା ଗୁରୁ ରୂପେ ବରଣ କରିଥିଲେ । ଏହାଙ୍କଠାରୁ ସେ ଶ୍ରୀମଦ୍ ଭାଗବତ ଏବଂ ଅନ୍ୟାନ୍ୟ ସଂସ୍କୃତ ଶାସ୍ତ୍ର ଅଧ୍ୟୟନ କରିଥିଲେ । ବାମଣ୍ଡା ରାଜ ସଭାରେ ସେତେବେଳେ ଏକ ଆଦର୍ଶ ପଣ୍ଡିତ ମଣ୍ଡଳୀ ସମ୍ମାନିତ ହୋଇ ରହିଥିଲେ । ସେମାନଙ୍କ ମଧ୍ୟରେ ପଣ୍ଡିତ ସୁଦର୍ଶନ ନ୍ୟାୟରତ୍ନ, ପଣ୍ଡିତ ମଧୁସୂଦନ ମିଶ୍ର ତର୍କ ବାଚସ୍ପତି ପଣ୍ଡିତ କାଳିଚରଣ ଦ୍ୱିବେଦୀ ବିଦ୍ୟାଭୂଷଣ, ପଣ୍ଡିତ ଭାଗୀରଥି ରଥ, ପଣ୍ଡିତ ନୀଳକଣ୍ଠ ଷଡ଼ଙ୍ଗୀ, ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ପଣ୍ଡିତ ଚିନ୍ତାମଣି ମିଶ୍ର, ତର୍କ ବାଚସ୍ପତି, ଦାର୍ଶନିକ ପଣ୍ଡିତ ବାସୁଓଝା, ଭାରତ ମାର୍ତ୍ତଣ୍ଡ ଶିବ କୁମାର ଶାସ୍ତ୍ରୀ, ଶ୍ରୀଜର ଶାସ୍ତ୍ରୀ ପ୍ରମୁଖ ପ୍ରଧାନ । ଏ ପଣ୍ଡିତ ମଣ୍ଡଳୀ ମଧ୍ୟରେ ଭୁବନେଶ୍ୱର ବଡ଼ପଣ୍ଡା ଶ୍ରେଷ୍ଠ ରତ୍ନ ରୂପେ ସମ୍ମାନ ପାଉଥିଲେ ।

ନିଜର ବାମଣ୍ଡା ରହଣୀ କାଳରେ ସେ 'ଆନନ୍ଦ ଦାମୋଦର ଚମ୍ପୂ' 'ବାମଣ୍ଡା ରାଜବଂଶାନୁ ଚରିତ' ନାମକ ଦୁଇଟି ସଂସ୍କୃତ ଗ୍ରନ୍ଥ ରଚନା କରିଥିଲେ । ପ୍ରଥମୋକ୍ତ ପୁସ୍ତକର ଅନବଦ୍ୟ ପାଣ୍ଡିତ୍ୟ ଏବଂ ସାହିତ୍ୟିକ ମୂଲ୍ୟବୋଧ ସମ୍ପର୍କରେ ସମ୍ବଲପୁର ହିତୈଷିଣୀ ସମ୍ପାଦକ ନୀଳମଣି ବିଦ୍ୟାରତ୍ନଙ୍କ ପ୍ରଶଂସା ବେଶ୍ ପ୍ରଣିଧାନ ଯୋଗ୍ୟ, "କଟକ ଜିଲ୍ଲା ଅନ୍ତର୍ଗତ ତିଗିରିଆ ହରିହରପୁର ନିବାସୀ ବୃଦ୍ଧ ପଣ୍ଡିତ ପଦୋପାଧ୍ୟକ ଶ୍ରୀ ଭୁବନେଶ୍ୱର ମିଶ୍ର ମହୋଦୟଙ୍କ ରଚିତ "ଆନନ୍ଦ ଦାମୋଦର ଚମ୍ପୂ" ନାମକ ଖଣ୍ଡିଏ ସଂସ୍କୃତ ଗଦ୍ୟ ପଦ୍ୟ ମୟୀ ପୁସ୍ତକ ସମାଲୋଚନା ସକାଶେ ପାଇ ଅତ୍ୟନ୍ତ ଆନନ୍ଦର ସହିତ ଗ୍ରହଣ କରିଅଛୁ । ଉତ୍କଳପରି ଦେଶରେ ଏପରି ପ୍ରକାଣ୍ଡ ସଂସ୍କୃତ ଗ୍ରନ୍ଥ ରଚିତ ହେବ ବୋଲି ଆସମାନଙ୍କର ବିଶ୍ୱାସ ନଥିଲା xxx ଚମ୍ପୂ ଖଣ୍ଡିକ କୃଷ୍ଣ ଚରିତ ଅବଲମ୍ବନରେ ଲିଖିତ ଭାଷା, ଭାବ ଅପେକ୍ଷାକୃତ ପ୍ରାଞ୍ଜଳ ହୋଇ ଏବଂ ବିବିଧ ଅଳଙ୍କାର ଖଚିତ ହୋଇ ଖଣ୍ଡିଏ ଆନନ୍ଦପ୍ରଦ ଅମୂଲ୍ୟ ଗ୍ରନ୍ଥ ହୋଇଛି । xxx ଗୁଣଗ୍ରାହୀ ବାମଣ୍ଡା ନରେଶ, ପଣ୍ଡିତ ବରଙ୍କୁ ସଭା ପଣ୍ଡିତ ରୂପେ ବରଣ କରି ଅଛନ୍ତି ଏବଂ ତାଙ୍କର ଏହି ଗ୍ରନ୍ଥ ପ୍ରକାଶ ବିଷୟରେ ସମସ୍ତ ସାହାଯ୍ୟ କରି ଅଶେଷ ଧନ୍ୟବାଦର ପାତ୍ର ହୋଇ ଅଛନ୍ତି ।(୨)

ଚମ୍ପୂଟି ବିବିଧ ଅଳଙ୍କାର ମଣ୍ଡିତ ଲାଳିତ୍ୟପୂର୍ଣ୍ଣ ପଦ ସଂଯୋଜନା ଏବଂ ସୁଲଳିତ ବାକ୍ ବୈଭବରେ ପରିପୂର୍ଣ୍ଣ । ଏହାର ଗୋଟିଏ ଉଦାହରଣ ନିଆଯାଇ ପାରେ, ଭ୍ରାନ୍ତି ମଦାଳଙ୍କାରର ଉଦାହରଣ :

"କସ୍ୟାଶ୍ଚିଲ୍ଲିକ ଚମ୍ପକା ବଚସ୍ୱନେ
କସ୍ୟାଶ୍ଚି ଦେବାଙ୍ଗୁଳୀଂ"

କର୍ଣ୍ଣଦ୍ବାଂ କୁସୁମ ଭ୍ରମେଣ ସଖି ମା
ମୁଞ୍ଚେତି ବାଚଃ ଶ୍ରୁତୌ ।
ଅସ୍ମାତେ ପିକ ବିଭ୍ରମ ଦ୍ବିଜ ଭୂଜି
ବ୍ୟାଧୂୟ ଶାଖାଂ ମୁହୁ
ଲୁମ୍ପତି ତଚ୍ଚନ୍ଦ୍ର ଶେବତେ ଚିରତରଂ
ମୁଞ୍ଚେତୁ ସଖେଦ୍ୟୀ ତଦା ।"(୩)

'ବାମଣ୍ଡା ରାଜ ବଂଶାନୁ ଚରିତ ଚମ୍ପୂ' ଏବଂ "ଆନନ୍ଦ ଦାମୋଦର ଚମ୍ପୂ" ଦ୍ବୟ ଇଉରୋପ, ଆମେରିକା, ଜାପାନ ଓ ଭାରତର ସଂସ୍କୃତିଜ୍ଞ ପଣ୍ଡିତ ମଣ୍ଡଳୀରେ ବିତରିତ ହୋଇ ଉଚ୍ଚ ପ୍ରଶଂସା ଲାଭ କରିଥିଲା ।(୪) ବାମଣ୍ଡା ରାଜବଂଶାନୁ ଚରିତ ଚମ୍ପୂର ଉତ୍କର୍ଷତା ତା'ର ନାନ୍ଦୀଶ୍ଳୋକରୁ ହିଁ ଜଣାପଡ଼େ । "ଶ୍ରୀ ଭଦ୍ରାରି ସୁତୋଃଗ୍ରଜେନ ସହିତେ । ବ୍ରହ୍ମାଦିଦେବ ସ୍ତୁତେ ବିଶ୍ରେଷ୍ଠାଂ ମହିତୋଃଶିତାଚଳ ଗତୋ ମୋଦାନ୍ବିତୋ ନିତ୍ୟଶଃ । ଭକ୍ତ ପ୍ରେମ ଧୃତୋ ଅତ୍ୟୁତୋଃମର ନୁତୋ ନିତ୍ୟାର୍ଚ୍ଚି ନାରାଧୃତେ । ସୁପ୍ରୀତୋ ଜଗତୋ ହିତୋ ଦୟାରତୋ, ଭୂୟାତ୍ସ ତୋ ମାଧବଃ ।(୫)

୧୮୮୭ ଖ୍ରୀ: ରେ ଯେତେବେଳେ ଦେବଗଡ଼ରେ ସମ୍ବଲପୁର ହିତୈଷିଣୀ ପତ୍ରିକାର ଅଭ୍ୟାଗମ ହୁଏ ସେତେବେଳେ ଏହାର ଆଭିମୁଖ୍ୟ ସମ୍ପର୍କରେ ଉଚିତ ଦିଗ୍‌ଦର୍ଶନ ଦିଅନ୍ତି ପଣ୍ଡିତ ବଡ଼ପଣ୍ଡା । ତାଙ୍କ ରଚିତ ନାନ୍ଦୀ ଶ୍ଳୋକକୁ ମୁଖଶାଳା ରୂପେ ସମ୍ମାନ ପ୍ରଦାନ କରି ଏ ପତ୍ରିକା ନିଜର ୩୪ ବର୍ଷର ପ୍ରକାଶନ ଅନ୍ତରାଳରେ ଓଡ଼ିଶାର ସାହିତ୍ୟ, ଇତିହାସ, ବିଜ୍ଞାନ ଏବଂ ସମାଜ ଜୀବନକୁ ପ୍ରଭାବିତ ତଥା ନିୟନ୍ତ୍ରିତ କରିବାର ସୌଭାଗ୍ୟ ଅର୍ଜନ କରିଛି । ସେ' ଦିନର ସେ ଶ୍ଳୋକର ସାର୍ବଜନୀନ ଆବେଦନକୁ ବିଶ୍ଳେଷଣ କଲେ ପଣ୍ଡିତଙ୍କର ଦୂରଦୃଷ୍ଟିର ପରିଚୟ ମିଳେ । ଏ ସାମ୍ପ୍ରତୀକ ସମୟର ଗତି ଆବେଦନ ଏବଂ ପରିସରକୁ ବିଚାର କରି ଏପରି ଏକ ଯୁଗାନ୍ତକାରୀ ଶ୍ଳୋକ ପ୍ରଦାନ କରିବା ଉଚ୍ଚରୁଚିର ପ୍ରମାଣ ଦିଏ ।

"ସମାଜ କାର୍ଯ୍ୟାଣିଚ ରାଜନୀତି ବିଜ୍ଞାନ ସାହିତ୍ୟ ବିଚାର ଯୁକ୍ତିଃ ଶୁଭେଚ ସନ୍ଦେଶ ବଚଃ ପ୍ରମେୟଃ ବଦିବାତ୍ରି ସୁପତ୍ରିକେୟଂ । ଗୁଣାନୁପାଦାୟ ମୁଦଂ ବହନ୍ତ କ୍ରିତ୍ୟେ ବିଶ୍ୱରେ ଜଗତ ସୁରଶ୍ଚଃ ବପ୍ତେ ବିଳାସେ ହୃଦୟଂ ହରନ୍ତଃ, ସୌଜନ୍ୟ ପୁଣ୍ୟେନ ଜୟନ୍ତୁ ସନ୍ତଃ" ।

ଡିଗିରିଆ ରାଜା ପଣ୍ଡିତ ମହୋଦୟଙ୍କୁ ବଡ଼ପଣ୍ଡା ଉପାଧି ପ୍ରଦାନ କରିଥିଲେ । ପୁନଶ୍ଚ ୧୯୯୨ରେ ତାଙ୍କର ପାଣ୍ଡିତ୍ୟରେ ବାମଣ୍ଡା ରାଜା ତାଙ୍କୁ "ବକୁଳ କବି"ର ଉପାଧିରେ ସମ୍ମାନିତ କରିଥିଲେ ।(୬) ଏ ସମ୍ମାନ ସଭାରେ ପଣ୍ଡିତେ ବକୁଳ ବର୍ଣ୍ଣନା କରିବାକୁ ଯାଇ ସ୍ବତଃ ଗାଇ ଉଠିଥିଲେ :

"ତବ ବକୁଳ ମଳିନା ମନ୍ଦଂ କୁତିକ୍ଷତ୍
ନବ କୁଳତା ମପିମନ୍ଦ ହେ ପ୍ରତିଷ୍ଠାଂ ।
ନବ କୁଳ ସୁହୃଦା ଧ୍ରୁତଂଚ ମୌଳୌ
ଧ୍ରୁବ କୁଳ ସତ୍ ଶିଶୁମାର ଭାଗ୍ୟମେଷି ।"(୭)

ବିଭିନ୍ନ ପ୍ରେକ୍ଷାପଟରେ ଅନେକ ଶ୍ଳୋକ ରଚନା କରି ଯାଇଛନ୍ତି ଭୁବନେଶ୍ବର ବଡ଼ପଣ୍ଡା । ତାଙ୍କର ରଚନା କାନ୍ତ କୋମଳ ଶ୍ରୁତିମଧୁର ପଦାବଳୀରେ ରୁଚିମନ୍ତ । ଓଡ଼ିଶାରେ ରେଲପଥ ନିର୍ମାଣ ପ୍ରସଙ୍ଗରେ ସେ ରେଳଗାଡ଼ିର ଏକ ମାର୍ମିକ ବର୍ଣ୍ଣନା ଦିଅନ୍ତି । "ଜଗଦ୍ୱୈରି ଧ୍ୱନୀନା ନିବିଡ଼ ଘନଘଟ । ଘର୍ଘର ଧ୍ବ ଧାରା ଧୂତ୍କାର ବ୍ୟଗ୍ର ଶବ୍ଦ ଗ୍ରହ ପଟିମ ସମୁଚ୍ଛେଦିଭିଙ୍କ ଯାନ୍ତି ଦ୍ୱିତେ ଘସ୍ରେ ନିଜେଷ୍ଟଂ ନଷ୍ଟତି ଜନପଦଂ ମାସ ଗମ୍ୟା ଧ୍ରୁବେଦୀ ପ୍ରାକ୍ୟଂ ସାମ୍ରାଜ୍ୟ ସୌଖ୍ୟଂ ଚିରମନୁଭବିତୁଂ ଲୁଟଙ୍କେ ଦେବ କଃ ।"(୮)

୧୯୦୫ ଖ୍ରୀ: ରେ ଦେବଗଡ଼ଠାରେ ରାଜକବି ସଚ୍ଚିଦାନନ୍ଦ ଦେବଙ୍କ ଆସନ୍ନ ଦିବ୍ୟଶଙ୍କରଙ୍କର ବ୍ରତୋତ୍ସବ ଅନୁଷ୍ଠିତ ହୁଏ । ପିତାଙ୍କର ଗୁରୁସ୍ଥାନୀୟ ପଣ୍ଡିତ ବଡ଼ପଣ୍ଡାଙ୍କୁ ରାଜା ପାଲିକି ପଠାଇ ଡିଗିରିଆରୁ ବାମଣ୍ଡାକୁ ନିମନ୍ତ୍ରଣ କରି ଆଣନ୍ତି । ପଣ୍ଡିତ ମହୋଦୟ ବାମଣ୍ଡାରେ ଏ ପର୍ଯ୍ୟାୟରେ ଦୁଇ ମାସ କାଳ ରହି ବିଭିନ୍ନ ସାହିତ୍ୟ ସଭାରେ ସଭାପତିତ୍ୱ କରନ୍ତି । ୨୯-୧-୧୯୦୫ ଦିନ ବ୍ରତୋତ୍ସବ ପାଇଁ ନିମନ୍ତ୍ରିତ ରାଜା, କବି, ପଣ୍ଡିତଙ୍କ ଉପସ୍ଥିତିରେ ଏକ ସାହିତ୍ୟ ସଭାରେ ବଡ଼ପଣ୍ଡାଙ୍କୁ ସଭାପତି ରୂପେ ବରଣ କରାଯାଏ । ସେ ସଭାରେ ସଚ୍ଚିଦାନନ୍ଦ ଦେବଙ୍କୁ "ବିଜ୍ଞାନ ବିନୋଦ" ଏବଂ ବିଦ୍ବାନ ପଣ୍ଡିତ ନନ୍ଦଲାଲ ଦୁବେଙ୍କୁ "ପଦ୍ୟଭୂଷଣ" ଉପାଧି ପ୍ରଦାନ ହୁଏ । ସେ ସଭାରେ ଅନ୍ୟତମ ବକ୍ତା ରୂପେ ବିଜୟ ଚନ୍ଦ୍ର ମଜୁମଦାର ଜାତି ପ୍ରଥାର କୁପରିଣାମ ସମ୍ପର୍କରେ ଏକ ମୂଲ୍ୟବାନ ଇଂରାଜୀ ପ୍ରବନ୍ଧ ପାଠ କରନ୍ତି । ଏ ସଭାରେ ସଭାପତିତ୍ୱ ଅଭିଭାଷଣରେ ବଡ଼ପଣ୍ଡା ମହାଶୟ ଭାରତୀୟ ସଂସ୍କୃତି କିପରି ସହାବସ୍ଥାନ ଏବଂ ବିଶ୍ୱ ଭ୍ରାତୃତ୍ୱର ପରାକାଷ୍ଠା ପ୍ରଦର୍ଶନ କରେ ବୁଝାଇ ଥିଲେ । ନିଜର ୮୦ ବର୍ଷ ବୟସର ରୁଗ୍ଣ ଶରୀରରେ ମଧ୍ୟ ସେ ଅର୍ଦ୍ଧଘଣ୍ଟା ବ୍ୟାପୀ ଏକ ଓଜସ୍ୱିନୀ ଭାଷଣ ପ୍ରଦାନ କରିବାକୁ ସକ୍ଷମ ହୋଇ ଥିଲେ ।(୯) ଏତଦ୍ ବ୍ୟତୀତ ୧୮୮୬ରେ ସେଠି ଏକ ସଭାରେ ରାଧାନାଥଙ୍କୁ "କବିବର" ଉପାଧି ପ୍ରଦାନ କରାଯାଇଥିଲା । ସେଥିରେ ସଭାପତି ଥିଲେ ପଣ୍ଡିତ ଭୁବନେଶ୍ବର ବଡ଼ପଣ୍ଡା ।

## ପୂର୍ଣ୍ଣଚ୍ଛେଦ :

ପଣ୍ଡିତ ଭୁବନେଶ୍ବର ବଡ଼ପଣ୍ଡାଙ୍କ ସାରସ୍ୱତ କୃତିର ଏହା ସାମଗ୍ରିକ ଅଧ୍ୟୟନ ନୁହେଁ ବରଂ ଏକ ସୂଚନା ମାତ୍ର । ପଣ୍ଡିତ ମହୋଦୟଙ୍କର ରଚନା ସମଗ୍ର ସଂକଳିତ ହେଲେ ଓଡ଼ିଆ ସାହିତ୍ୟକୁ ତାଙ୍କର ଦାନର ମହନୀୟତା ପ୍ରକାଶ ପାଇବ । ଏ ଆଲୋଚନାରେ ପଣ୍ଡିତ ମହୋଦୟଙ୍କୁ ସାମାନ୍ୟ ସମ୍ମାନ ପ୍ରଦର୍ଶନ ଅବସର ସୃଷ୍ଟି କରି ପାରିଲେ ଏ ଉଦ୍ୟମ ସାର୍ଥକ ହୋଇପାରିବ ହେବ ।

## ସହାୟକ ସୂଚୀ :

(୧) ଗଳାଗ ଦ୍ରୁତି ଭ୍ରମର ଖ୍ରୀ: ସମ୍ବଲପୁର ହିତୈଷିଣୀ ୨-୬-୧୯୯୪ ।

(୨) ସମ୍ବଲପୁର ହିତୈଷିଣୀ : ୧୪ ଭାଗ, ୧୯ ସଂଖ୍ୟା ତା ୩୮-୫-୧୯

(୧) ଆଗତ ଦାମୋଦର ଗ୍ରନ୍ଥ-ପୃ-୭୮ : ଭୁବନେଶ୍ୱର ବଡ଼ପଣ୍ଡା : ଜଗନ୍ନାଥ ଜେନା ପ୍ରେସ, ଦେବଗଡ଼-୧୮୯୨ ।

(୨) ବାମଣ୍ଡା ସମ୍ବାଦ : ସମ୍ବଲପୁର ହିତୈଷିଣୀ ୪/୧୩ ତା ୩୧-୮-୧୮୯୨ ।

(୩) ବାମଣ୍ଡା ରାଜବଂଶାନୁ ଚରିତ : ଭୁବନେଶ୍ୱର ବଡ଼ପଣ୍ଡା : ଜଗନ୍ନାଥ ଜେନା ପ୍ରେସ : ବାମଣ୍ଡା : ଶକାବ୍ଦ ୧୮୧୧ ।

(୪) ପଣ୍ଡିତ ଭୁବନେଶ୍ୱର ମିଶ୍ର ବଡ଼ପଣ୍ଡା : ବୃନ୍ଦାବନ ନାଥଶର୍ମା : ଉପହାର (ତ୍ରୈମାସିକ ପତ୍ରିକା-ଦେବଗଡ଼) : ଅକ୍ଟୋବର-୧୯୩୫ ।

(୫) ବାମଣ୍ଡା ରାଜ ବଂଶାନୁ ଚରିତ : ପୃ-୧୩ ।

(୬) କାଶୀଭ୍ରମଣ ଭୂମିକା : ସଚ୍ଚିଦାନନ୍ଦ ଦେବ : ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ-୧୯୬୭ ପୃ-୫୦୨ରେ ଉଦ୍ଧୃତ ।

(୭) ଭୂଗୋଳକ : ପୃ-୨୩୬-୨୩୭ : ଜଗନ୍ନାଥ ଜେନା ପ୍ରେସ, ଦେବଗଡ଼ : ଦୀନବନ୍ଧୁ ପ୍ରଧାନ ।

---

ଶବରୀ ପଲ୍ଲୀ ସ୍କୁଲ,
ମୟୂରଭଞ୍ଜ-୭୫୭୦୨୧



ଭାରତ ସରକାରଙ୍କ ବିଜ୍ଞାନ ଓ ବୈଷୟିକ କାରିଗରୀ ବିଭାଗର ଯୁଗ୍ମ ଉପଦେଷ୍ଟା ଶ୍ରୀ ଏନ୍. କେ. ସେହେଗଲ, ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ତାଙ୍କ ଏରୋଡ୍ରମସ୍ଥିତ ବାସଭବନରେ ସାକ୍ଷାତ କରୁଛନ୍ତି ।

# ସମ୍ବାଦ ପରିକ୍ରମା

## ରାଜ୍ୟସ୍ତରୀୟ ପ୍ରାକୃତିକ ବିପର୍ଯ୍ୟୟ କମିଟି ବୈଠକ : ସାମ୍ପ୍ରତିକ ବନ୍ୟା ପରିସ୍ଥିତି ସମ୍ପର୍କରେ ମୁଖ୍ୟମନ୍ତ୍ରୀଙ୍କ ସମୀକ୍ଷା

ସମ୍ପ୍ରତି ସଚିବାଳୟ ସମ୍ମିଳନୀ ପ୍ରକୋଷ୍ଠରେ ରାଜ୍ୟସ୍ତରୀୟ ପ୍ରାକୃତିକ ବିପର୍ଯ୍ୟୟ କମିଟିର ଏକ ବୈଠକ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇ ସାମ୍ପ୍ରତିକ ବନ୍ୟା ପରିସ୍ଥିତିକୁ ମୁକାବିଲା କରିବା ସମ୍ପର୍କରେ ବିସ୍ତୃତ ଆଲୋଚନା କରାଯାଇଛି ।

ଆଲୋଚନା ଆରମ୍ଭ କରି ରାଜସ୍ୱ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାଥ ନାୟକ କହିଲେ ଯେ, ୧୯୬୨ ମସିହା ପରେ ଜୁଲାଇ ମାସରେ ବନ୍ୟା ହେବା ଏକ ନୂଆ ଘଟଣା । ଏହି ଗୁରୁତର ବନ୍ୟାରେ କଟକ ଓ ଜଗତ୍‌ସିଂହପୁର ଜିଲ୍ଲାର ବ୍ୟାପକ ଅଞ୍ଚଳ ଜଳମଗ୍ନ ହୋଇଛି ଏବଂ ପ୍ରାୟ ୧୦ ଲକ୍ଷ ଲୋକ ବିପନ୍ନ ହୋଇପଡ଼ିଛନ୍ତି । ଆସନ୍ତା ଦିନେ ଦୁଇଦିନ ଭିତରେ ବନ୍ୟା ପରିସ୍ଥିତି ପୁରାପୁରି ସୁଧୁରି ଯିବ ବୋଲି ସେ ଆଶା ପ୍ରକାଶ କରିଥିଲେ । ସେ କହିଥିଲେ ଯେ, ବନ୍ୟା ପ୍ଲାବିତ ଅଞ୍ଚଳରେ ରିଲିଫ୍ ଓ ଉଦ୍ଧାର କାର୍ଯ୍ୟ ଜୋରସୋରରେ ଆରମ୍ଭ ହୋଇଛି । ରାଜ୍ୟର ବରିଷ୍ଠ ଅଫିସରମାନେ ଏହାକୁ ତଦାରଖ କରୁଛନ୍ତି । ଆଜି ମୁଖ୍ୟମନ୍ତ୍ରୀ ନିଜେ ରିଲିଫ୍ ସାମଗ୍ରୀ ସହ ସେନାବାହିନୀ ହେଲିକପ୍ଟରର ଯୋଗେ ବନ୍ୟାଞ୍ଚଳ ଆକାଶମାର୍ଗରୁ ପରିଦର୍ଶନ କରିବେ ।

ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ରବିନାରାୟଣ ଦାସ ରିଲିଫ୍ କାର୍ଯ୍ୟ ସମ୍ପର୍କରେ ସୂଚନା ଦେଇ କହିଲେ ଯେ, ଜଗତ୍‌ସିଂହପୁର ଜିଲ୍ଲାର କ୍ଷତିଗ୍ରସ୍ତ ଅଞ୍ଚଳକୁ ପ୍ରଥମ ପର୍ଯ୍ୟାୟରେ ୨,୫୦୦ କ୍ୱିଣ୍ଟାଲ ଖଇ, ୩୦୦ କ୍ୱିଣ୍ଟାଲ ଚୁଡ଼ା ଓ ୩୦ କ୍ୱିଣ୍ଟାଲ ଗୁଡ଼ ପଠାଯାଇସାରିଛି । ଏହାଛଡ଼ା ୮୦୦ଟି ଟ୍ରକ୍ ବୋଝେଇ ପଲିଥିନ୍ ମଧ୍ୟ ପଠାଯାଇଛି ଏବଂ ୨୨ଟି ପାୱାର ବୋଟ୍ ଦ୍ୱାରା ରିଲିଫ୍ ଓ ଉଦ୍ଧାର କାର୍ଯ୍ୟ ଆରମ୍ଭ କରାଯାଇଛି । ମଣିଷ ଓ ଗୃହପାଳିତ ପଶୁମାନଙ୍କ ଖାଦ୍ୟପଦାର୍ଥ, ଚିକିତ୍ସା ଓ ସ୍ୱାସ୍ଥ୍ୟରକ୍ଷା ପାଇଁ ସବୁ ପ୍ରକାର ପଦକ୍ଷେପ ଗ୍ରହଣ କରାଯାଇଛି । ଜିଲ୍ଲାପାଳମାନଙ୍କ ସଙ୍ଗେ ସମ୍ପର୍କ ରକ୍ଷା କରାଯାଇ ରିଲିଫ୍ ବ୍ୟବସ୍ଥାକୁ ଅଧିକ ଦକ୍ଷ ଓ କ୍ରିୟାଶୀଳ କରାଯାଇଛି ।

ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ କହିଲେ ଯେ, ଓଡ଼ିଶାକୁ ବନ୍ୟା ବାତ୍ୟାରୁ ରକ୍ଷା କରିବାପାଇଁ ସ୍ଥାୟୀ ବ୍ୟବସ୍ଥା ସମ୍ପର୍କରେ ଚିନ୍ତା କରିବାକୁ ପଡ଼ିବ । ପ୍ରାକୃତିକ ବିପର୍ଯ୍ୟୟ ପାଣ୍ଠିର ପରିମାଣ ବୃଦ୍ଧି ସମ୍ପର୍କରେ ସେ କହିଲେ ଯେ, ଚିର ମରୁଡ଼ି, ବନ୍ୟା, ବାତ୍ୟା ପ୍ରପୀଡ଼ିତ ଓଡ଼ିଶା ପାଇଁ ପ୍ରାକୃତିକ ବିପର୍ଯ୍ୟୟ ପାଣ୍ଠି ଅନ୍ୟୁନ ୫୦୦ କୋଟି ଟଙ୍କା ହେବା ଦରକାର । ଏ ଦିଗରେ ପାର୍ଲାମେଣ୍ଟ ସଭ୍ୟମାନେ କେନ୍ଦ୍ର ସରକାରଙ୍କୁ ପ୍ରବର୍ତ୍ତାଇବା ପାଇଁ ସେ ପରାମର୍ଶ ଦେଇଥିଲେ । ସେ କହିଥିଲେ ଯେ, ଗଞ୍ଜାମ ଜିଲ୍ଲାରେ ଋଷିକୁଲ୍ୟା ନଦୀ ଦ୍ୱାରା ହୋଇଥିବା କ୍ଷୟକ୍ଷତିକୁ ସୁଧାରିବା ପାଇଁ ୬୦ କୋଟି ଟଙ୍କା ଖର୍ଚ୍ଚ ହୋଇଛି । ଏଥିପାଇଁ କେନ୍ଦ୍ରଠାରୁ ଏ ପର୍ଯ୍ୟନ୍ତ କୌଣସି ଅନୁଦାନ ମିଳିନଥିବାରୁ ସେ କ୍ଷୋଭ ପ୍ରକାଶ କରିଥିଲେ ।

ବୈଠକ ପରେ ପରେ ମୁଖ୍ୟମନ୍ତ୍ରୀ ରିଲିଫ୍ ସାମଗ୍ରୀ ସହିତ ବାୟୁସେନା ହେଲିକପ୍ଟରର ଯୋଗେ ବନ୍ୟା ପ୍ରପୀଡ଼ିତ ଅଞ୍ଚଳକୁ ଯାତ୍ରା କରିଥିଲେ । ନିକଟରେ ମୁଖ୍ୟମନ୍ତ୍ରୀ ବନ୍ୟା ପରିସ୍ଥିତି ରିଲିଫ୍ ଯୋଗାଣ ସମ୍ପର୍କରେ ଜଳସେଚନ ମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର, ରାଜସ୍ୱ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ରନାଥ ନାୟକ, ମୁଖ୍ୟ ଶାସନ ସଚିବ ଶ୍ରୀ ରବିନାରାୟଣ ଦାସଙ୍କ ସମେତ ଉଚ୍ଚପଦସ୍ଥ ଅଫିସରମାନଙ୍କ ସହିତ ବିସ୍ତୃତ ଆଲୋଚନା କରିଥିଲେ ।

ପ୍ରାକୃତିକ ବିପର୍ଯ୍ୟୟ କମିଟି ବୈଠକରେ ମନ୍ତ୍ରୀ ସର୍ବଶ୍ରୀ ସୁରେନ୍ଦ୍ରନାଥ ନାୟକ, ବିଜୟ ମହାପାତ୍ର, ନଳିନୀକାନ୍ତ ମହାନ୍ତି, ଭାଗବତ ବେହେରା, ବେଦପ୍ରକାଶ ଅଗ୍ରୱାଲ, ଅଚ୍ୟୁତ ପ୍ରସାଦ ସିଂହ, ମୁଞ୍ଚାଫିଜ ଅହମଦ୍, ସାଂସଦ ସର୍ବଶ୍ରୀ ସନାତନ ବିଶି, ଅର୍ଜୁନ ଚରଣ ସେଠୀ, ଶିବାଜୀ ପଟ୍ଟନାୟକ, ବ୍ରଜକିଶୋର ତ୍ରିପାଠୀ, ଶ୍ରୀମତୀ ମୀରା ଦାସ, ବିଧାୟକ ସର୍ବଶ୍ରୀ ରଘୁନାଥ ପଟ୍ଟନାୟକ, ଯୋଗେନ୍ଦ୍ର ବେହେରା, ବୀରଭଦ୍ର ସିଂହ, ରାଧାକାନ୍ତ ସେଠୀ, ସଚ୍ଚିଦାନନ୍ଦ ଦଲାଲ, ବିକ୍ରମ କେଶରୀ ଦେଓ, ଶ୍ରୀମତୀ ସୁଶ୍ରୀ ଦେବୀଙ୍କ ସମେତ ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ରବିନାରାୟଣ ଦାସ, ରାଜସ୍ୱ ପର୍ଷଦ ସଦସ୍ୟ ଶ୍ରୀ କେ: କେ: ଭଟ୍ଟାଚାର୍ଯ୍ୟ, ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ରାଜକିଶୋର ଭୁଜବଳ, ଉନ୍ନୟନ କମିଶନର ଶ୍ରୀ ପ୍ରଫୁଲ୍ଲ ମୋହନ ମହାପାତ୍ର, ସ୍ୱତନ୍ତ୍ର ରିଲିଫ୍ କମିଶନର ଟି. ଡି. ଭଟ୍ଟାଚାର୍ଯ୍ୟ ପ୍ରମୁଖ ଉଚ୍ଚ ପଦସ୍ଥ ଅଫିସରମାନେ ଯୋଗ ଦେଇ...

## ବନ୍ୟା ପରିସ୍ଥିତି ସମ୍ପର୍କରେ କେନ୍ଦ୍ରମନ୍ତ୍ରୀ ଶ୍ରୀ ଆଣ୍ଟୋନୀଙ୍କ ମନ୍ତ୍ରୀ ଓ ଅଫିସରମାନଙ୍କ ସହ ଆଲୋଚନା

ଓଡ଼ିଶାର ବନ୍ୟା ପ୍ରତିକାର ପାଇଁ ସ୍ଥାୟୀ ବ୍ୟବସ୍ଥା ଗ୍ରହଣ କରିବା ସଙ୍ଗେ ସଙ୍ଗେ ଚଳିତ ବନ୍ୟା ଜନିତ କ୍ଷୟକ୍ଷତିକୁ ଭରଣା କରିବାପାଇଁ କେନ୍ଦ୍ର ସରକାର ସ୍ୱତନ୍ତ୍ର କେନ୍ଦ୍ରୀୟ ଅନୁଦାନ ଯୋଗାଇ ଦେବା ରାଜ୍ୟ ମନ୍ତ୍ରୀମଣ୍ଡଳର ସଭ୍ୟମାନେ କେନ୍ଦ୍ରମନ୍ତ୍ରୀ ଶ୍ରୀ ଏ. କେ. ଆଣ୍ଟୋନୀଙ୍କ ନିକଟରେ ଦୃଢ଼ ଦାବୀ କରିଛନ୍ତି ।

ଓଡ଼ିଶାର ସାମ୍ପ୍ରତିକ ବନ୍ୟା କ୍ଷୟକ୍ଷତି ସମ୍ପର୍କରେ ଅନୁଧ୍ୟାନ କରିବା ପାଇଁ ଆସିଥିବା କେନ୍ଦ୍ରମନ୍ତ୍ରୀ ଶ୍ରୀ ଏ. କେ. ଆଣ୍ଟୋନୀ ଆକାଶମାର୍ଗରୁ ବନ୍ୟାଞ୍ଚଳ ପରିଦର୍ଶନ କରିବାପରେ ସଚିବାଳୟସ୍ଥ ସମ୍ମିଳନୀ ପ୍ରକୋଷ୍ଠରେ ରାଜ୍ୟସ୍ତ ପରିଷଦର ସଭ୍ୟ ଓ ବରିଷ୍ଠ ଅଧିକାରୀମାନଙ୍କ ସହ ଆଲୋଚନା କଲାବେଳେ ରାଜ୍ୟ ଜଳସମ୍ପଦ ବିକାଶ ମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର କହିଥିଲେ ଯେ, ରାଜ୍ୟରେ ବନ୍ଧବାନ୍ଧର ଅବସ୍ଥା ଯାହା, ବଡ଼ ବନ୍ୟା ଆସିଲେ ପରିସ୍ଥିତି ଅତ୍ୟନ୍ତ ଅସମ୍ଭାଳ ହୋଇପଡ଼ୁଛି । ୧୯୯୨ରେ ପ୍ରଧାନମନ୍ତ୍ରୀଙ୍କ ବନ୍ୟାଞ୍ଚଳ ପରିଦର୍ଶନ ପରେ କେନ୍ଦ୍ରୀୟ ଜଳ କମିଶନ ଓଡ଼ିଶାରେ ବନ୍ଧବାନ୍ଧର ସୁଦୃଢ଼ୀକରଣ ଓ ଆଧୁନିକୀକରଣ ପାଇଁ ୧୧୪ କୋଟି ଟଙ୍କାର ଏକ ପ୍ରକଳ୍ପ ରିପୋର୍ଟ ଦେଇଥିଲେ ମଧ୍ୟ କେନ୍ଦ୍ର ସରକାର ଏ ବାବଦରେ କୌଣସି ଅନୁଦାନ ଏ ପର୍ଯ୍ୟନ୍ତ ଦେଇନାହାନ୍ତି । ସ୍ୱତନ୍ତ୍ରଭାବେ କେନ୍ଦ୍ରୀୟ ଅନୁଦାନ ନମିଳିଲେ ରାଜ୍ୟର ବନ୍ଧବାନ୍ଧକୁ ସୁଦୃଢ଼ କରି ସ୍ଥାୟୀ ବନ୍ୟା ପ୍ରତିକାର ବ୍ୟବସ୍ଥା ଗ୍ରହଣ କରିବା ଅସମ୍ଭବ ହୋଇପଡ଼ିବ ବୋଲି ସେ କହିଥିଲେ ।

ଶ୍ରୀ ମହାପାତ୍ର କହିଥିଲେ ଯେ, ଜୁନ୍ ଜୁଲାଇ ଦୁଇମାସରେ ରାଜ୍ୟରେ ୮୦୦ ମି. ମି. ବର୍ଷା ହୋଇ ଅଭୂତପୂର୍ବ ବନ୍ୟା ପରିସ୍ଥିତି ସୃଷ୍ଟି ହୋଇଛି । ବନ୍ୟାଞ୍ଚଳର ଲୋକମାନଙ୍କର ଦୁର୍ଦ୍ଦଶା ଦୂର କରିବାପାଇଁ ଅନ୍ତତଃପକ୍ଷେ ଆଉ ୧୫ ଦିନ ପାଇଁ ରିଲିଫ୍ ବ୍ୟବସ୍ଥା ଜାରି ରଖିବାକୁ ପଡ଼ିବ । ଓଡ଼ିଶାବାସୀଙ୍କ ଦୁଃଖଦୁର୍ଦ୍ଦଶା ବିଷୟରେ ପ୍ରଧାନମନ୍ତ୍ରୀଙ୍କୁ ଅବଗତ କରିବା ପାଇଁ ଶ୍ରୀ ମହାପାତ୍ର, ଶ୍ରୀ ଆଣ୍ଟୋନୀଙ୍କୁ ନିବେଦନ କରିଥିଲେ ।

ପଞ୍ଚାୟତରାଜ ମନ୍ତ୍ରୀ ଡାକ୍ତର ଦାମୋଦର ରାଉତ ସାମ୍ପ୍ରତିକ ବନ୍ୟା ଦ୍ୱାରା ବ୍ୟାପକ କ୍ଷୟକ୍ଷତି ହୋଇଥିବାର ଦର୍ଶାଇ ପୁନର୍ନିର୍ମାଣ ଓ ଥଇଥାନ ବାବଦରେ ଅଧିକ ଧ୍ୟାନ ଦେବା ସଙ୍ଗେ ସଙ୍ଗେ ଲୋକମାନଙ୍କୁ ରୋଜଗାର ଯୋଗାଇ ଦେବାର ଆବଶ୍ୟକତା ରହିଛି ବୋଲି ଦର୍ଶାଇଥିଲେ । ସେ କହିଥିଲେ ଯେ, ରାଜ୍ୟର ୩ କୋଟି ୨୬ ଲକ୍ଷ ଲୋକଙ୍କ ଭିତରୁ ୧ କୋଟି ୮ ଲକ୍ଷ ଲୋକ ଦିନ ମଜୁରିଆ । ସେମାନଙ୍କୁ କାମଧନ୍ଦା ଯୋଗାଇ ଦେବା ପାଇଁ ରାଜ୍ୟରେ ଜବାହର ରୋଜଗାର ଯୋଜନାକୁ ଅଧିକ ବ୍ୟାପକ କରିବା ପାଇଁ ସେ କେନ୍ଦ୍ର ସରକାରଙ୍କ ସହଯୋଗ କାମନା କରିଥିଲେ । ଡକ୍ଟର ରାଉତ କହିଥିଲେ ଯେ, ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ବନ୍ୟା, ବାତ୍ୟା ଲାଗି ରହିଥିବା ଫଳେ କ୍ରମାଗତ ମୃତ୍ତିକା କ୍ଷୟ ଓ ପଟୁମାଟି ଦ୍ୱାରା ପୋତି ହୋଇପଡ଼ୁଥିବାରୁ ୧୦ ବର୍ଷ ତଳେ ୨୦ ଲକ୍ଷ କ୍ୟୁସେକ୍ ବନ୍ୟା ଜଳ ପାଇଁ ନିର୍ମାଣ କରାଯାଇଥିବା ବନ୍ଧବାନ୍ଧକୁ ସୁଦୃଢ଼ କରିବାର ତୁରନ୍ତ ଆବଶ୍ୟକ ରହିଛି ।

ସ୍ୱାସ୍ଥ୍ୟ ମନ୍ତ୍ରୀ ସଇଦ୍ ମୁସ୍ତାଫିଜ୍, ପୂର୍ତ୍ତ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି, ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ଆଚାର୍ଯ୍ୟ, ପଶୁ ସମ୍ପଦ ବିକାଶ ମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ନିଜ ନିଜ ବିଭାଗର ଆବଶ୍ୟକତା ସମ୍ପର୍କରେ ଉଲ୍ଲେଖ କରିଥିଲେ ।

ଅର୍ଥ ମନ୍ତ୍ରୀ ଶ୍ରୀ ବେଦପ୍ରକାଶ ଅଗ୍ରୱାଲା ବନ୍ୟାଞ୍ଚଳର ବାସଗୃହ ଯୋଗାଣ, ସାଧାରଣ ବଣ୍ଟନ ବ୍ୟବସ୍ଥା ରାସ୍ତାଘାଟ, ବନ୍ଧବାନ୍ଧର ମରାମତି ସଙ୍ଗେ ସଙ୍ଗେ ଲୋକଙ୍କୁ ନିଯୁକ୍ତି ଯୋଗାଇ ଦେବାର ଆବଶ୍ୟକତା ସମ୍ପର୍କରେ ଶ୍ରୀ ଆଣ୍ଟୋନୀ ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିବେ ବୋଲି ଆଶା ପ୍ରକାଶ କରିଥିଲେ ।

ଶ୍ରୀ ଆଣ୍ଟୋନୀ କହିଥିଲେ ଯେ, ସେ ନିଜେ ଓଡ଼ିଶାର ବନ୍ୟାସଙ୍କଟ ପ୍ରତ୍ୟକ୍ଷଭାବେ ଅନୁଧ୍ୟାନ କରିଛନ୍ତି । ରାଜ୍ୟ ସରକାର ଏଭଳି ସଙ୍କଟଜନକ ପରିସ୍ଥିତିକୁ ଏକାକୀ ମୁକାବିଲା କରିବା ଆଦୌ ସମ୍ଭବପର ନୁହେଁ । ଏଥିପାଇଁ କେନ୍ଦ୍ର ସରକାରଙ୍କ ଦୃଢ଼ ସହଯୋଗ ଓ ସମର୍ଥନ ମିଳିବ ବୋଲି ସୂଚନା ଦେଇ ସେ କହିଥିଲେ ଯେ, ଓଡ଼ିଶାର ବନ୍ୟା ପରିସ୍ଥିତି ସମ୍ପର୍କରେ ସେ ଆସନ୍ତା କାଲି ପ୍ରଧାନମନ୍ତ୍ରୀଙ୍କୁ ଏକ ପୂର୍ଣ୍ଣାଙ୍ଗ ରିପୋର୍ଟ ଦେବେ । ପରେ ଶ୍ରୀ ଆଣ୍ଟୋନୀ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଭେଟି ତାଙ୍କ ସହ ବନ୍ୟା ପରିସ୍ଥିତି ସମ୍ପର୍କରେ ଆଲୋଚନା କରିଥିଲେ ।

ଆଜିର ଆଲୋଚନାରେ ରାଜସ୍ୱ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ରନାଥ ନାୟକ, ପଞ୍ଚାୟତରାଜ ମନ୍ତ୍ରୀ ଡାକ୍ତର ଦାମୋଦର ରାଉତ, ଅର୍ଥମନ୍ତ୍ରୀ ଶ୍ରୀ ବେଦପ୍ରକାଶ ଅଗ୍ରୱାଲ, ସ୍ୱାସ୍ଥ୍ୟମନ୍ତ୍ରୀ ସଇଦ ମୁସ୍ତାଫିଜ୍ ଅହମ୍ମଦ, ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ଆଚାର୍ଯ୍ୟ, ଜଳସମ୍ପଦ ବିକାଶ ମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର, ପୂର୍ତ୍ତ, ଗୃହନିର୍ମାଣ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି, ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ମନ୍ତ୍ରୀ ଶ୍ରୀ ସୂର୍ଯ୍ୟ ନାରାୟଣ ପାତ୍ର, ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ରବି ନାରାୟଣ ଦାସଙ୍କ ସମେତ ଉଚ୍ଚପଦସ୍ଥ ଅଫିସରମାନେ ଉପସ୍ଥିତ ରହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ନିଃସ୍ୱାର୍ଥପରତା, ସ୍ଫଟିକ ନିର୍ମଳତା ଏବଂ ସ୍ୱାଭିମାନ ଗୌରୀଶଙ୍କରଙ୍କ ପ୍ରତି ପାଦରେ ସଫଳତା ଆଣି ଦେଇଥିଲା

—ରାଜ୍ୟପାଳ ଶ୍ରୀ ରେଡ୍ଡୀ

ସମ୍ପ୍ରତି କଟକ ଟାଉନ୍ ହଲ୍‌ଠାରେ ଆୟୋଜିତ କର୍ମବୀର ଗୌରୀଶଙ୍କରଙ୍କ ୭୨ତମ ଶ୍ରାଦ୍ଧ ବାର୍ଷିକୀ ଉତ୍ସବରେ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ କହିଲେ, ନିଃସ୍ୱାର୍ଥପରତା, ସ୍ଫଟିକ ନିର୍ମଳତା ଏବଂ ସ୍ୱାଭିମାନ ଗୌରୀଶଙ୍କରଙ୍କ ଜୀବନର ପ୍ରତି ପାଦରେ ସଫଳତା ଆଣି ଦେଇଥିଲା । ଯେଉଁ ବରପୁତ୍ରମାନେ

ଓଡ଼ିଆ ଭାଷା, ସାହିତ୍ୟ, ସ୍ୱତନ୍ତ୍ରତା, ସଂସ୍କୃତି ଏବଂ ଜାତୀୟ ସ୍ୱାଭିମାନର ପ୍ରତିଷ୍ଠା ପାଇଁ ସଂଗ୍ରାମ କରି ଆସୁଥିଲେ ସେମାନଙ୍କ ମଧ୍ୟରେ କର୍ମବୀର ଗୌରୀଶଙ୍କର ଅଗ୍ରଗଣ୍ୟ । ତାଙ୍କର ମାତୃଭାଷା ଏବଂ ମାତୃଭୂମି ପ୍ରୀତି ତାଙ୍କୁ କର୍ମବୀର ଉପାଧିରେ ଅଭିହିତ କରିଥିଲା । ସରଳ ହୃଦୟ, ନିଃସ୍ୱାର୍ଥପର ଏବଂ ଅସାଧାରଣ ବ୍ୟକ୍ତିତ୍ୱ ସମ୍ପୂର୍ଣ୍ଣ କର୍ମବୀର ଗୌରୀଶଙ୍କର ଓଡ଼ିଆ ଜାତିର ସ୍ୱାଭିମାନ ବୋଲି ଅଭିହିତ କରି ରାଜ୍ୟପାଳ ଶ୍ରୀ ରେଡ୍ଡୀ କହିଲେ ଯେ, ଓଡ଼ିଶାର ଶିକ୍ଷା ସାହିତ୍ୟ, ସଂସ୍କୃତି, ସମାଜ ସଂସ୍କାର, ଛାପାଖାନା ପ୍ରତିଷ୍ଠା, ପତ୍ରିକା ଉତ୍କଳ ଦୀପିକା ଆଦି କ୍ଷେତ୍ରରେ ଗୌରୀଶଙ୍କରଙ୍କ ଅବଦାନ ଓଡ଼ିଶାବାସୀଙ୍କ ଏକ ଆଦର୍ଶର ଉତ୍ସ । ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହୋଇ ଆଜିର ଯୁବ ସମାଜ କାର୍ଯ୍ୟ କରିବାକୁ ରାଜ୍ୟପାଳ ଆହ୍ୱାନ ଦେବା ସଙ୍ଗେ ସଙ୍ଗେ ଗୌରୀଶଙ୍କରଙ୍କ ଆଦର୍ଶକୁ ଜନମାନସରେ ଚିର ଅମଳିନ ରଖିବା ପାଇଁ କର୍ମବୀର ଗୌରୀଶଙ୍କର ସ୍ମୃତି ସଂସଦର ପ୍ରଚେଷ୍ଟା ପ୍ରଶଂସନୀୟ ବୋଲି ରାଜ୍ୟପାଳ ପ୍ରକାଶ କରିଥିଲେ ।

ଉତ୍ସବରେ ପ୍ରଜାତନ୍ତ୍ରର ମୁଖ୍ୟ ସମ୍ପାଦକ ଶ୍ରୀ ଭର୍ତ୍ତୃହରି ମହତାବ, ଜଷ୍ଟିସ୍ ନବକିଶୋର ଦାସ, ଉତ୍ସବର ସଭାପତି କାର୍ତ୍ତିକଚନ୍ଦ୍ର ରଥ ପ୍ରମୁଖ ଭାଷଣ ପ୍ରସଙ୍ଗରେ ଗୌରୀଶଙ୍କର ରାୟଙ୍କ ଆତ୍ମଜୀବନୀ ଅନୁଶୀଳନ କରି କହିଲେ ଯେ, ଦୃଢ଼ ଚରିତ୍ର, ନ୍ୟାୟବୋଧ, କର୍ମନିଷ୍ଠା କର୍ମବୀର ଗୌରୀଶଙ୍କରଙ୍କ ଜୀବନ ଦର୍ଶନରେ ପ୍ରତିଫଳିତ । ସମାଜ ଉତ୍ଥାନରେ ସେ ଥିଲେ ଜଣେ ଜାଗ୍ରତ ପ୍ରହରୀ । ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ ନୃତ୍ୟର ଉତ୍ଥାନ ପାଇଁ ଗୌରୀଶଙ୍କରଙ୍କ ଆଦର୍ଶ ଭୁଲି ଯାଉଥିବା ଓଡ଼ିଆମାନଙ୍କୁ ଆଗାମୀ ଦିନରେ ସଜାଗ କରି ପାରିବ ଏଥିରେ ସନ୍ଦେହର ଅବକାଶ ନାହିଁ ।

ଓଡ଼ିଶାର ମାନ୍ୟବର ରାଜ୍ୟପାଳ ସଂସଦ ଦ୍ୱାରା ଆୟୋଜିତ ପ୍ରବନ୍ଧ ତର୍କ ପ୍ରତିଯୋଗିତାରେ କୃତି ଛାତ୍ରଛାତ୍ରୀମାନଙ୍କୁ ପୁରସ୍କୃତ କରିଥିଲେ ଓ ସଂସଦର କୋଷାଧ୍ୟକ୍ଷ ଶ୍ରୀ ମନ୍ମଥନାଥ ମହାନ୍ତି ଧନ୍ୟବାଦ ଅର୍ପଣ କରିଥିଲେ ।

## ରାଜ୍ୟର ବନ୍ୟାଞ୍ଚଳରେ ଜରୁରୀକାଳୀନ ସାହାଯ୍ୟ ଯୋଗାଣ

ସମ୍ପ୍ରତି ରାଜ୍ୟରେ ଦେଖାଦେଇଥିବା ଅଭୂତପୂର୍ବ ବନ୍ୟା ପରିସ୍ଥିତିରେ ସାମାନ୍ୟ ଉନ୍ନତି ଘଟୁଛି । ବିଭିନ୍ନ ସ୍ଥାନରେ ବନ୍ୟା ଘେରରେ ଥିବା ଲୋକମାନଙ୍କ ପାଇଁ ସରକାରଙ୍କ ତରଫରୁ ରିଲିଫ୍ ଯୋଗାଣ ଯୁଦ୍ଧକାଳୀନ ଭିତ୍ତିରେ ଚାଲିଛି । ଗତ ଜୁଲାଇ ୧୯ ତାରିଖ ସୁଦ୍ଧା ଜଗତସିଂହପୁର ଜିଲ୍ଲାର ବନ୍ୟାଞ୍ଚଳରେ ୩୭୨୬-୫୩ କ୍ୱିଣ୍ଟାଲ୍ ଚାଉଳ, ୭୨୭-୧୨ କ୍ୱିଣ୍ଟାଲ୍ ଚୁଡ଼ା, ୫୯-୨୬ କ୍ୱିଣ୍ଟାଲ୍ ଗୁଡ଼, ୭ କ୍ୱିଣ୍ଟାଲ୍ ଲୁଣ ଓ ୧୪୮ ବଣ୍ଡଲ୍ ପଲିଥିନ୍ ବଣ୍ଟନ କରାଯିବା ସଙ୍ଗେ ସଙ୍ଗେ ହେଲିକପ୍ଟର ଯୋଗେ ଆକାଶ ମାର୍ଗରୁ ୭୬୫-୯୨ କ୍ୱିଣ୍ଟାଲ୍ ଶୁଖିଲା ଖାଦ୍ୟ ପୁଡ଼ିଆ ଜିଲ୍ଲାର ନାଉଗାଁ, ବାଲିକୁଦା ଓ ଜଗତସିଂହପୁର ବ୍ଲକ୍‌ର ବନ୍ୟା ଘେରରେ ଥିବା ଲୋକମାନଙ୍କ ପାଇଁ ପକାଯାଇଛି । ବିଭିନ୍ନ ଚିକିତ୍ସକ ଦଳଙ୍କ ଦ୍ୱାରା ଜିଲ୍ଲାର ୨,୦୮୫ ଜଣଙ୍କୁ ଇଞ୍ଜେକ୍ସନ୍ ଓ ୪,୨୮୮ଟି ଜଳାଶୟକୁ ବିଶୋଧନ କରାଯାଇଛି । ବନ୍ୟା ଘେରରେ ଥିବା ଲୋକମାନଙ୍କୁ ଉଦ୍ଧାର କରିବା ନିମନ୍ତେ ୪୧ଟି ବୋଟ୍ ଲଗାଯାଇଛି ।

ସେହିପରି କଟକ ଜିଲ୍ଲାର ବନ୍ୟା ଦୁର୍ଗତ ଲୋକମାନଙ୍କ ନିମନ୍ତେ ୧୩୬୪-୬୨ କ୍ୱିଣ୍ଟାଲ୍ ଚାଉଳ, ୬୯-୯୯ କ୍ୱିଣ୍ଟାଲ୍ ଚୁଡ଼ା, ୪ କ୍ୱିଣ୍ଟାଲ୍ ଗୁଡ଼ ଓ ୩୯ଟି ପଲିଥିନ୍ ବଣ୍ଡଲ୍ ଯୋଗାଇ ଦିଆଯିବା ସଙ୍ଗେ ସଙ୍ଗେ ଉଦ୍ଧାର କାର୍ଯ୍ୟରେ ୨୪ଟି ବୋଟ୍ ଲଗାଯାଇଛି ।

ପୁରୀ ଜିଲ୍ଲାର ବନ୍ୟା କ୍ଷତିଗ୍ରସ୍ତ ଲୋକମାନଙ୍କ ପାଇଁ ଜରୁରୀକାଳୀନ ସାହାଯ୍ୟ ବାବଦରେ ୨୨୬୧-୭୨ କ୍ୱିଣ୍ଟାଲ୍ ଚାଉଳ, ୨୪୩ କ୍ୱିଣ୍ଟାଲ୍ ଚୁଡ଼ା, ୨୮ କ୍ୱିଣ୍ଟାଲ୍ ଗୁଡ଼ ବଣ୍ଟନ କରାଯାଇଛି ଏବଂ ଏହା ଫଳରେ ଜିଲ୍ଲାର ଏକ ଲକ୍ଷ ୮୮ ହଜାର ୯୩୮ ଜଣ ଲୋକ ଉପକୃତ ହୋଇ ପାରିଛନ୍ତି । ଉଦ୍ଧାର କାର୍ଯ୍ୟ ପାଇଁ [illegible] ପାୱାର ବୋଟ୍ ଓ ୧୩୧ଟି ଦେଶୀ ଡଙ୍ଗା ଲଗାଯାଇଛି । ଜିଲ୍ଲା [illegible] ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳରେ ସ୍ୱାସ୍ଥ୍ୟ ତଥା ପଶୁ ଚିକିତ୍ସା [illegible] ସୁଷ୍ଠୁ ରୂପେ ଚାଲିଛି ଏବଂ ୨୫୦ଟି ଜଳାଶୟର ବିଶୋଧନ କରାଯାଇଛି ।

ଭଦ୍ରକ ଜିଲ୍ଲା ଅନ୍ତର୍ଗତ ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳରେ ୨୦ କ୍ୱିଣ୍ଟାଲ୍ ଚାଉଳ, ୩୦ କ୍ୱିଣ୍ଟାଲ୍ ଚୁଡ଼ା, ୭ କ୍ୱିଣ୍ଟାଲ୍ ଗୁଡ଼ ଓ ଗୋରୁଗାଈଙ୍କ ନିମନ୍ତେ ୨୨ କ୍ୱିଣ୍ଟାଲ୍ କୁଣ୍ଡା ଯୋଗାଇ ଦିଆଯାଇଛି ।

ବାଲେଶ୍ୱର ଜିଲ୍ଲାର ବନ୍ୟାଞ୍ଚଳରେ ୭୦ କ୍ୱିଣ୍ଟାଲ୍ ଚାଉଳ, [illegible] କ୍ୱିଣ୍ଟାଲ୍ ଚୁଡ଼ା, ୭-୨୫ କ୍ୱିଣ୍ଟାଲ୍ ଗୁଡ଼ ଓ ୩୦ ବଣ୍ଡଲ୍ ପଲିଥିନ୍ ଏବଂ ଗୋରୁଗାଈଙ୍କ ପାଇଁ ୩୦୦ କ୍ୱିଣ୍ଟାଲ୍ କୁଣ୍ଡା ଜରୁରୀକାଳୀନ ସାହାଯ୍ୟ ଯୋଗାଇ ଦିଆଯାଇଛି । ଏହା ବ୍ୟତୀତ ତା ୧୯-୭-୧୯୯୪ ରିଖରୁ ବନ୍ୟା କ୍ଷତିଗ୍ରସ୍ତ ୧୦,୯୩୦ ଜଣ ହିତାଧିକାରୀଙ୍କ ମଧ୍ୟରେ ୨୦୦ କ୍ୱିଣ୍ଟାଲ୍ ଚାଉଳ ବଣ୍ଟନ କରାଯାଇଛି ।

ଯାଜପୁର ଜିଲ୍ଲାର ବନ୍ୟାଞ୍ଚଳରେ ୨ ଲକ୍ଷ ୭୩ ହଜାର ୨୦୦ ଜଣ ବନ୍ୟାକ୍ଲିଷ୍ଟ ଲୋକଙ୍କ ପାଇଁ ୩ ଦିନ ପାଇଁ ସାହାଯ୍ୟ ଯୋଗାଇ ଦିଆଯିବା ସଙ୍ଗେ ସଙ୍ଗେ ୪୧ଟି ଦେଶୀ ଡଙ୍ଗାକୁ ଉଦ୍ଧାର କାର୍ଯ୍ୟରେ ଲଗାଯାଇଛି ।

କେନ୍ଦ୍ରାପଡ଼ା ଜିଲ୍ଲା ବନ୍ୟା କ୍ଷତିଗ୍ରସ୍ତ ଲୋକମାନଙ୍କ ପାଇଁ ରିଲିଫ୍ ସାମଗ୍ରୀ ବଣ୍ଟନ କରାଯାଇଛି । ଜିଲ୍ଲାର ୬ଟି ବ୍ଲକ୍ ଅନ୍ତର୍ଗତ ୬୯ଟି ବନ୍ୟା ଦୁର୍ଗତ ଗ୍ରାମରେ ୨୩୮-୭୨ କ୍ୱିଣ୍ଟାଲ୍ ଚାଉଳ, [illegible] କ୍ୱିଣ୍ଟାଲ୍ ଚୁଡ଼ା ଓ ୦-୫୦ କ୍ୱିଣ୍ଟାଲ୍ ଗୁଡ଼ ବଣ୍ଟନ କରାଯିବା ସଙ୍ଗେ ସଙ୍ଗେ ରାଜନଗର ବ୍ଲକ୍‌ର ବନ୍ୟା ଘେରରେ ଥିବା ଲୋକମାନଙ୍କ ନିମନ୍ତେ ପ୍ରତିରକ୍ଷା ହେଲିକପ୍ଟର ଯୋଗେ ଆକାଶ ମାର୍ଗରୁ [illegible] କ୍ୱିଣ୍ଟାଲ୍ ୧୦୦ଟି ଶୁଖିଲା ଖାଦ୍ୟ ପୁଡ଼ିଆ ପକାଯାଇଛି ।

ନୟାଗଡ଼ ଜିଲ୍ଲାର ବନ୍ୟାଗ୍ରସ୍ତ ଲୋକମାନଙ୍କ ନିମନ୍ତେ [illegible] ପାଇଁ ଜରୁରୀକାଳୀନ ସାହାଯ୍ୟ ଯୋଗାଇ ଦିଆଯିବା ସଙ୍ଗେ ସଙ୍ଗେ ବନ୍ୟା ଘେରରେ ଥିବା ଲୋକମାନଙ୍କ ସାହାଯ୍ୟ ତଥା ଉଦ୍ଧାର କାର୍ଯ୍ୟରେ ୧୧ଟି ଦେଶୀ ଡଙ୍ଗା ଲଗାଯାଇଛି । ଗଣିଆ, [illegible] ଖଣ୍ଡପଡ଼ା ବ୍ଲକ୍‌ରେ ନଡ଼ା ଓ କୁଣ୍ଡା ଯୋଗାଇ [illegible] [illegible] ଖୋର୍ଦ୍ଧା ଜିଲ୍ଲାର ବନ୍ୟାଗ୍ରସ୍ତ ଲୋକମାନଙ୍କ ନିମନ୍ତେ

ସ୍ୱଳ୍ପକାଳୀନ ସାହାଯ୍ୟ ଯୋଗାଇ ଦିଆଯାଇଛି । ଫଳରେ ୯୮,୩୯୭ ଜଣ ଉପକୃତ ହୋଇ ପାରିଛନ୍ତି ।

## ଖୋର୍ଦ୍ଧା ଜିଲ୍ଲାରେ ଗତ ଆର୍ଥିକ ବର୍ଷରେ ଆଇ.ଆର୍.ଡି.ପି.ରେ ଶତକଡ଼ା ୯୬.୧୩ ଭାଗ ସଫଳତା ହାସଲ

ଗତ ଜୁଲାଇ ୭ ତାରିଖ ଦିନ ଭୁବନେଶ୍ୱରଠାରେ ଖୋର୍ଦ୍ଧା ଜିଲ୍ଲା ଉପଦେଷ୍ଟା କମିଟି ବୈଠକ ଜିଲ୍ଲାପାଳ ଶ୍ରୀ ରଘୁନାଥ ଦାଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଯାଇଛି । ଏହି ବୈଠକରେ ଗତ ଆର୍ଥିକ ବର୍ଷ (୧୯୯୩-୯୪)ରେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ ଜରିଆରେ ଜିଲ୍ଲାର ୫,୨୧୯ଟି ପରିବାରଙ୍କୁ ଉପକୃତ କରାଯାଇ ଶତକଡ଼ା ୯୬-୧୩ ଭାଗ ସଫଳତା ହାସଲ କରାଯାଇଛି ବୋଲି ପ୍ରକାଶ ପାଇଥିଲା । ଗତ ଆର୍ଥିକ ବର୍ଷରେ ଏହି ଯୋଜନାରେ ୫,୪୩୫ଟି ପରିବାରଙ୍କୁ ଉପକୃତ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା ।

ଉକ୍ତ ସମସ୍ତ ମଧ୍ୟରେ ଏହି ଯୋଜନାରେ ବାଣପୁର ବ୍ଲକ୍‌ର ୪୯୬ଟି, ଭୁବନେଶ୍ୱର ବ୍ଲକ୍‌ରେ ୩୬୭ଟି, ବାଲିଅନ୍ତା ବ୍ଲକ୍‌ରେ ୩୯୦ଟି, ବାଲିପାଟଣା ବ୍ଲକ୍‌ରେ ୩୬୨ଟି, ଜଟଣୀ ବ୍ଲକ୍‌ରେ ୩୯୬ଟି, ଖୋର୍ଦ୍ଧା ବ୍ଲକ୍‌ରେ ୪୯୬ଟି, ଟାଙ୍ଗୀ ବ୍ଲକ୍‌ରେ ୫୩୯ଟି, ଚିଲିକା ବ୍ଲକ୍‌ରେ ୫୩୫ଟି, ବେଗୁନିଆ ବ୍ଲକ୍‌ରେ ୫୨୯ଟି ଓ ବୋଲଗଡ଼ ବ୍ଲକ୍‌ରେ ୫୨୮ଟି ପରିବାରଙ୍କୁ ଅନ୍ତର୍ଭୁକ୍ତ କରାଯାଇ ଉପକୃତ କରାଯାଇଛି ବୋଲି ସମୀକ୍ଷାରୁ ଜଣାଯାଇଛି ।

ଏହି ବୈଠକରେ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମର ଅଗ୍ରଗତି ସମ୍ପର୍କରେ ମଧ୍ୟ ସମୀକ୍ଷା କରାଯାଇଥିଲା ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ଅତିରିକ୍ତ ଜିଲ୍ଲାପାଳ ଶ୍ରୀ ଉପେନ୍ଦ୍ରନାଥ ନାୟକଙ୍କ ସମେତ ଡି.ଆର୍.ଡି.ଏ.ର ପ୍ରୋଜେକ୍ଟ ଅଫିସର, ଉପଜିଲ୍ଲାପାଳ, ବି.ଡି.ଓ., ବ୍ୟାଙ୍କ କର୍ମକର୍ତ୍ତା ପ୍ରମୁଖ ଯୋଗ ଦେଇଥିଲେ ।

## କର୍ମଜୀବୀ ସାମ୍ବାଦିକଙ୍କ ସମସ୍ୟା ସମ୍ପର୍କରେ ଆଲୋଚନା

ଗତ ଜୁଲାଇ ୨୬ ତାରିଖ ଦିନ ସଚିବାଳୟଠାରେ ଶ୍ରମ ଓ ନିଯୋଜନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲଙ୍କ ଅଧ୍ୟକ୍ଷତାରେ କର୍ମଜୀବୀ ସାମ୍ବାଦିକମାନଙ୍କ ସମସ୍ୟା ସମ୍ପର୍କରେ ଏକ ଆଲୋଚନା ବୈଠକ ଅନୁଷ୍ଠିତ ହୋଇଯାଇଛି । ଶ୍ରମ ଓ ନିଯୋଜନ ବିଭାଗ ପକ୍ଷରୁ ଆୟୋଜିତ ଏହି ବୈଠକରେ ସାମ୍ବାଦିକମାନଙ୍କର ବିଭିନ୍ନ ସମସ୍ୟାର ସମାଧାନ ନିମନ୍ତେ ଏକ ରାଜ୍ୟସ୍ତରୀୟ ଉପଦେଷ୍ଟା କମିଟି ଗଠନ କରାଯିବା ସମ୍ପୃକ୍ତ ପ୍ରେସ ସଂସ୍ଥା, ସୂଚନା ଓ ଲୋକ ସମ୍ପର୍କ ବିଭାଗ, ରାଜ୍ୟ ପରିବହନ ନିଗମ ଓ ପ୍ରୋଭିଡେଣ୍ଟ ଫଣ୍ଡ କମିଶନର ଆଦିଙ୍କ ସହାୟତାରେ ରାଜ୍ୟରେ କାର୍ଯ୍ୟରତ ସାମ୍ବାଦିକମାନଙ୍କୁ ଚିହ୍ନଟ କରିବା ଏବଂ ୱେଜବୋର୍ଡ଼ ସୁପାରିଶକୁ କାର୍ଯ୍ୟକାରୀ କରିବା ଆଦି ସମ୍ପର୍କରେ ଆଲୋଚନା ହୋଇଥିଲା ।

ଏହା ବ୍ୟତୀତ ରାଜ୍ୟରେ ସାମ୍ବାଦିକମାନଙ୍କ ପାଇଁ ପେନ୍‌ସନ୍ ଯୋଜନା କାର୍ଯ୍ୟକାରୀ କରିବା, ଅବସର ସମୟ ସୀମା ବୃଦ୍ଧି କରିବା, ଗ୍ରାମାଞ୍ଚଳ ସାମ୍ବାଦିକମାନଙ୍କୁ ବିଭିନ୍ନ ସୁବିଧା ସୁଯୋଗ ଯୋଗାଇ ଦେବା, ଦୁଃସ୍ଥ ସାମ୍ବାଦିକମାନଙ୍କୁ ପେନ୍‌ସନ୍ ପ୍ରଦାନ କରିବା, ସମ୍ପୃକ୍ତ ପ୍ରେସ୍ ସଂସ୍ଥା ସାମ୍ବାଦିକମାନଙ୍କର ଜ୍ୟେଷ୍ଠତାକୁ ଭିତ୍ତି କରି ପଦୋନ୍ନତି ଦେବା ଓ ଅନ୍ୟାନ୍ୟ ଦାବୀ, ଯଥା—ଚିକିତ୍ସା ଭତ୍ତା, ନଗର ଭତ୍ତା ଓ ରାତ୍ରିକାଳୀନ ଭତ୍ତା ପ୍ରଦାନ ଆଦି ବିଭିନ୍ନ ବିଷୟରେ ଆଲୋଚନା କରାଯାଇଥିଲା ।

ଉପରୋକ୍ତ ସମସ୍ୟା ଉପରେ ବିଶଦ ଆଲୋଚନା ନିମନ୍ତେ ଆସନ୍ତା ମାସରେ ଏକ ବୈଠକ ଡାକିବାକୁ ଶ୍ରମ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସାମଲ ସୂଚନା ଦେଇଥିଲେ ।

ଏହି ବୈଠକରେ ସାମ୍ବାଦିକ ସର୍ବଶ୍ରୀ ସତ୍ୟ ରାୟ, ବାସୁଦେବ ସେଠୀ, ରାମକୃଷ୍ଣ ବେହେରା, ଆନନ୍ଦ କୁମାର ମହାନ୍ତି, ବିବେକାନନ୍ଦ ଦାସ, ସନତ ମିଶ୍ର, ପ୍ରସନ୍ନ ନାୟକ, ଦେବାଶିଷ ରାୟ, ଅରୁଣ ପଣ୍ଡା, ବିଜୟ ରାଉତରାୟ ଓ ରାମହରି ମିଶ୍ର ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ଶ୍ରମ ଓ ନିଯୋଜନ ବିଭାଗ ଶାସନ ସଚିବ ଶ୍ରୀ କେ. ଏନ୍. ପୋଦ୍ଦାର, ଶ୍ରମ କମିଶନର ଶ୍ରୀ ବିନୟ ଭୂଷଣ ମିଶ୍ର, ସୂଚନା ଓ ଲୋକ ସମ୍ପର୍କ ବିଭାଗ ନିର୍ଦ୍ଦେଶକ ଶ୍ରୀ ସୁରସେନ ଜେନା ପ୍ରମୁଖ ଏହି ବୈଠକରେ ଯୋଗ ଦେଇଥିଲେ ।

## "ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ବନ୍ୟା ଘେରରେ ଥିବା ଲୋକଙ୍କୁ ମରିବାକୁ ଦେବି ନାହିଁ"

—ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ

ଆମ ରାଜ୍ୟରେ ଅଭୂତପୂର୍ବ ବର୍ଷା ଫଳରେ ଆକସ୍ମିକ ଭାବରେ ମହାନଦୀ, ସୁବର୍ଣ୍ଣରେଖା ଓ ତା'ର ଶାଖା ନଦୀମାନଙ୍କରେ ପ୍ରବଳ ବନ୍ୟା ଦେଖା ଦେଇଛି । ମୁଁ ଜାଣେ, ବନ୍ୟାଞ୍ଚଳର ମୋ' ଭାଇ, ଭଉଣୀ, ପୁଅ, ଝିଅ ଓ ନାତି, ନାତୁଣୀ ସମସ୍ତେ ଚରମ ଦୁଃଖ ଓ ଦୁର୍ଦ୍ଦଶା ମଧ୍ୟରେ ଦିନ କାଟୁଛନ୍ତି । ସେମାନଙ୍କ ଦୁଃଖରେ ମୁଁ ସମଦୁଃଖୀ ହେବା ସଙ୍ଗେ ସଙ୍ଗେ ମନରେ ସାହାସ ବାନ୍ଧି ଏହି ଦୈବୀ ଦୁର୍ବିପାକକୁ ମୁକାବିଲା କରିବା ପାଇଁ ନିବେଦନ କରୁଛି ।

ବନ୍ୟା ପ୍ରପୀଡ଼ିତ ଅଞ୍ଚଳର ଉଦ୍ଧାର କାର୍ଯ୍ୟଠାରୁ ଆରମ୍ଭ କରି ରିଲିଫ୍ ସାମଗ୍ରୀ ଯୁଦ୍ଧକାଳୀନ ଭିତ୍ତିରେ ଯୋଗାଇ ଦେବା ପାଇଁ ମୁଁ ନିର୍ଦ୍ଦେଶ ଦେଇଛି । କିନ୍ତୁ ପ୍ରଶାସନିକ ବଳ ସହିତ ଜନସାଧାରଣ ଓ ସ୍ୱେଚ୍ଛାସେବୀ ସଙ୍ଗଠନମାନଙ୍କର ସହଯୋଗ ଆଜିର ଏହି ସଙ୍କଟମୟ ପରିସ୍ଥିତିକୁ ମୁକାବିଲା କରିବା ପାଇଁ ଏକାନ୍ତ ଅପରିହାର୍ଯ୍ୟ । ଆସନ୍ତୁ, ଆମେ ସମସ୍ତେ ମିଳିମିଶି ଏହି ବିପଦ ପୂର୍ଣ୍ଣ ଅବସ୍ଥାକୁ ଦୂର କରିବା ଦିଗରେ କାର୍ଯ୍ୟ କରିବା ।

## ଶିକ୍ଷକ କଲ୍ୟାଣ ପାଣ୍ଠିରୁ ଦୁଃସ୍ଥ ଶିକ୍ଷକଙ୍କୁ ସର୍ବୋଚ୍ଚ ୮ ହଜାର ଟଙ୍କା ଯୋଗାଇ ଦିଆଯିବ

ମାରାତ୍ମକ ରୋଗରେ ପଡ଼ିଥିବା ରାଜ୍ୟର ଦୁଃସ୍ଥ ଶିକ୍ଷକଙ୍କର ଚିକିତ୍ସା ନିମନ୍ତେ ଆବଶ୍ୟକତା ଅନୁଯାୟୀ ଶିକ୍ଷକ କଲ୍ୟାଣ ପାଣ୍ଠିରୁ

ସର୍ବୋଚ୍ଚ ୮ ହଜାର ଟଙ୍କା ପର୍ଯ୍ୟନ୍ତ ଆର୍ଥିକ ସାହାଯ୍ୟ ଯୋଗାଇ ଦେବା ଲାଗି ଶିକ୍ଷା ମନ୍ତ୍ରୀ ମଞ୍ଜୁର କରିବେ ବୋଲି 'ଟିଚର୍ସ ଫାଉଣ୍ଡେସନ୍ ଡେ' ବୈଠକରେ ସ୍ଥିର ହୋଇଛି ।

ସଚିବାଳୟଠାରେ ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ବୈଠକରେ ଉକ୍ତ ପାଣ୍ଠିରୁ ସାହାଯ୍ୟ ପାଇବା ପାଇଁ ବର୍ତ୍ତମାନ ସୁଦ୍ଧା ଆସିଥିବା ଆବେଦନ ପତ୍ରଗୁଡ଼ିକୁ କମିଟି ଜରିଆରେ ଯାଞ୍ଚ କରାଯାଇ ଯୋଗ୍ୟ ବିବେଚିତ ଆବେଦନ ପତ୍ରଗୁଡ଼ିକର ମଞ୍ଜୁରୀ ନିମନ୍ତେ ଆସନ୍ତା ଅଗଷ୍ଟ ମାସ ଶେଷ ସୁଦ୍ଧା ସରକାରଙ୍କ ସୁପାରିଶ କରାଯିବା ପାଇଁ ନିଷ୍ପତ୍ତି ହୋଇଛି । ଏହା ବ୍ୟତୀତ ଶିକ୍ଷକ କଲ୍ୟାଣ ପାଣ୍ଠି ବୃଦ୍ଧି କରିବା ଉଦ୍ଦେଶ୍ୟରେ 'ଗୁରୁ ଦିବସ' ଦିନ ପ୍ରତ୍ୟେକ ବିଦ୍ୟାଳୟ ଜରିଆରେ ଅର୍ଥ ସଂଗ୍ରହ କରିବା ଓ ସଂଗୃହୀତ ଅର୍ଥ ପ୍ରତ୍ୟେକ ସ୍କୁଲ ସର୍କଲ ଇନସପେକ୍ଟର ବ୍ୟାଙ୍କ ଡ୍ରାଫଟ୍ ଜରିଆରେ ରାଜ୍ୟ ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶକ ତଥା ନେସନାଲ ଫାଉଣ୍ଡେସନ୍ ଅଫ୍ ଟିଚରସ୍ ୱେଲଫେୟାର୍ ଅଫ୍ ସମ୍ପାଦକ ତଥା କୋଷାଧ୍ୟକ୍ଷଙ୍କ ନିକଟକୁ ପଠାଇବା ଏବଂ ଏହି କଲ୍ୟାଣ ପାଣ୍ଠିରେ ଗଚ୍ଛିତ ଥିବା ଅର୍ଥର ଆୟ-ବ୍ୟୟ ହିସାବ ଯାଞ୍ଚ କରିବା ନିମନ୍ତେ ବୈଠକରେ ସ୍ଥିର ହୋଇଛି ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ସ୍କୁଲ ଓ ଗଣଶିକ୍ଷା ବିଭାଗ ଶାସନ ସଚିବ ଶ୍ରୀ ଧୀରେନ୍ଦ୍ରନାଥ ପାଢ଼ୀଙ୍କ ସମେତ ସମ୍ପୃକ୍ତ ବିଭାଗୀୟ ଅଧିକାରୀମାନେ ଯୋଗ ଦେଇଥିଲେ ।

## ଦାବୀ ପାଇଁ ଆନ୍ଦୋଳନ ନ ହୋଇ ଶିକ୍ଷାର ବିକାଶ ପାଇଁ ଆନ୍ଦୋଳନ ହେଉ

ରାଜ୍ୟର ଆର୍ଥିକ ଅସ୍ୱଚ୍ଛଳତା ସତ୍ତ୍ୱେ, ବିଗତ ଚାରିବର୍ଷ ମଧ୍ୟରେ ସରକାର ଶିକ୍ଷା ବ୍ୟବସ୍ଥାର ଉନ୍ନତି ଏବଂ ଶିକ୍ଷକ ସମାଜର କଲ୍ୟାଣ ପାଇଁ ବହୁ ଯୁଗାନ୍ତକାରୀ ତଥା ଐତିହାସିକ ପଦକ୍ଷେପ ଗ୍ରହଣ କରିଥିଲେ ମଧ୍ୟ ଶିକ୍ଷାର ଗୁଣାତ୍ମକ ମାନରେ କୌଣସି ଆଶାଜନକ ଉନ୍ନତି ହୋଇ ନଥିବା, ବିଶେଷ କରି ସର୍ବଭାରତୀୟ ସେବା ଓ ବ୍ୟାଙ୍କ୍ ସେବା ଇତ୍ୟାଦି ପାଇଁ ହେଉଥିବା ନିଯୁକ୍ତି ପରୀକ୍ଷାରେ ଓଡ଼ିଆ ପ୍ରାର୍ଥୀମାନେ ଆଶାନୁରୂପ ଭାବେ କୃତିତ୍ୱ ହାସଲ କରିପାରୁ ନଥିବାରୁ ସ୍କୁଲ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ ଉଦ୍‌ବେଗ ପ୍ରକାଶ କରି ଶିକ୍ଷକମାନେ ସେମାନଙ୍କର ଦାବୀ ପାଇଁ ଆନ୍ଦୋଳନ ନକରି ଶିକ୍ଷାର ବିକାଶ ଦିଗରେ ନିଜକୁ ନିୟୋଜିତ କରିବାକୁ ପରାମର୍ଶ ଦେଇଛନ୍ତି ।

ସଚିବାଳୟଠାରେ ଏକ ସାମ୍ବାଦିକ ସମ୍ମିଳନୀରେ ଶ୍ରୀ ଘଡ଼ାଇ କହିଲେ ଯେ, ଗତ ଚାରିବର୍ଷ ମଧ୍ୟରେ ରାଜ୍ୟରେ ୪୧,୨୦୪ଟି ପ୍ରାଥମିକ ବିଦ୍ୟାଳୟ ଏକ ଲକ୍ଷ ୪ ହଜାର ୩୩୮ ଜଣ ଶିକ୍ଷକଙ୍କୁ ସରକାରୀ କର୍ମଚାରୀ ଭାବେ ଗ୍ରହଣ କରାଯାଇଛି, ୪,୯୦୯ଟି ମଧ୍ୟ ଇଂରାଜୀ ବିଦ୍ୟାଳୟର ପରିଚାଳନା ଭାର ହାତକୁ ନିଆଯାଇଛି ଓ ଅବଶିଷ୍ଟ ୧୨୨ଟି ବିଦ୍ୟାଳୟର ପରିଚାଳନା ଭାର ହାତକୁ ନେବାକୁ ସରକାରୀ ନିଷ୍ପତ୍ତି ହୋଇଛି । ଦୀର୍ଘ ୧୦/୧୨ ବର୍ଷ ଧରି ଅପେକ୍ଷାରତ ୫୦୨ଟି ହାଇସ୍କୁଲର ଶିକ୍ଷକମାନଙ୍କୁ ଅନୁଦାନ (ଗ୍ରାଣ୍ଟ-ଇନ୍-ଏଡ୍) ଦେବା ଏବଂ ୩,୦୮୭ଟି ପୂର୍ଣ୍ଣ ସାହାଯ୍ୟପ୍ରାପ୍ତ ହାଇସ୍କୁଲ, ୮୩ଟି ସଂସ୍କୃତ ମଧ୍ୟମା ସ୍କୁଲ ଓ ୧୨୫ଟି ପ୍ରଥମା ଟୋଲର ପରିଚାଳନା ଭାର ହାତକୁ [illegible] ସରକାରଙ୍କ ଅତି ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ । ଏହା ବ୍ୟତୀତ [illegible] ହଜାରରୁ ଊର୍ଦ୍ଧ୍ୱ ଶିକ୍ଷାକର୍ମୀଙ୍କୁ ରେଗୁଲାର୍ କରାଯାଇ [illegible] ଶିକ୍ଷକ ଭାବେ ନିଯୁକ୍ତି ଦିଆଯାଇଛି । ଅଣ-ତାଲିମପ୍ରାପ୍ତ ଆଦିବାସୀ ଓ ହରିଜନ ଶିକ୍ଷାକର୍ମୀମାନଙ୍କ ଦାବୀ ପ୍ରତି ସହାନୁଭୂତି ପ୍ରଦର୍ଶନ କରି ସେମାନଙ୍କୁ ଅଣ-ତାଲିମପ୍ରାପ୍ତ [illegible] ରେଗୁଲାର୍ କରିବା ନିମନ୍ତେ ନିଷ୍ପତ୍ତି ହୋଇଛି । ୧୯୯୩-୯୪ ଆର୍ଥିକ ବର୍ଷ ପାଇଁ ନୂତନ କରି ୪୦୦ଟି ପ୍ରାଥମିକ ବିଦ୍ୟାଳୟ, ୧୫୦ଟି ୟୁ: ଜି: ଏମ୍: ଇ: ସ୍କୁଲ ୧୫୦ଟି ହାଇସ୍କୁଲ ପ୍ରତିଷ୍ଠା କରାଯାଇଛି ଏବଂ ୧୯୯୪-୯୫ ମସିହାରେ ୫୦୦ଟି ପ୍ରାଥମିକ ସ୍କୁଲ, ୨୫୦ଟି ୟୁ: ଜି: ସ୍କୁଲ ଓ ୨୦୦ଟି ହାଇସ୍କୁଲ ଖୋଲିବା ପାଇଁ ପ୍ରସ୍ତାବ ରହିଛି । ଅଧିକ ୩,୬୦୦ ଜଣ ଶିକ୍ଷାକର୍ମୀଙ୍କୁ ନିଯୁକ୍ତି ଦିଆଯାଇଛି । ସଙ୍ଗୀତ ଶିକ୍ଷକ ଓ ପି: ଇ: ଟି:ମାନଙ୍କ ଦରମା ହାର ବର୍ଦ୍ଧିତ କରାଯାଇଛି । ୪୮ ବର୍ଷରେ ପଦାର୍ପଣ କରିଥିବା ଅଣ-ତାଲିମପ୍ରାପ୍ତ ଶିକ୍ଷକମାନଙ୍କୁ ତାଲିମ [illegible] ଦରମା ଦେବାର ନିଷ୍ପତ୍ତି ହୋଇଛି । ତାଲିମପ୍ରାପ୍ତ ଅଣ-ମାଟ୍ରିକ ପ୍ରାଥମିକ ଶିକ୍ଷକମାନଙ୍କୁ ସିନିଅରିଟି ଭିତ୍ତିରେ ହେଡ୍ ମାଷ୍ଟର ପଦବୀକୁ ପ୍ରମୋଶନ୍ ଦେବାକୁ ନିର୍ଦ୍ଦେଶ ଦିଆଯାଇଛି । ପ୍ରାଥମିକ, ମାଧ୍ୟମିକ ଓ ହାଇସ୍କୁଲ ସ୍ତରରେ ୧୯୯୦ ମସିହାରୁ ପ୍ରଚଳିତ ବୃତ୍ତି ପରିମାଣକୁ ବୃଦ୍ଧି କରାଯାଇଛି । ହାଇସ୍କୁଲ ସାର୍ଟିଫିକେଟ ପରୀକ୍ଷାରେ ପ୍ରଥମ ୧୦ଟି ସ୍ଥାନ ରଖୁଥିବା ଛାତ୍ର ଛାତ୍ରୀମାନଙ୍କୁ ମୁଖ୍ୟମନ୍ତ୍ରୀଙ୍କ ମେଧା ପୁରସ୍କାର ଓ ମେଡାଲ୍ ଦିଆଯାଉଛି । ପ୍ରାଇମେରୀ, ମଧ୍ୟ ଇଂରାଜୀ, ହାଇସ୍କୁଲ ଓ ମଦ୍ରାସା ପାଇଁ [illegible] ଭାବେ ଅନେକ ପଦବୀ ସୃଷ୍ଟି କରାଯାଇଛି ଏବଂ ନିଯୁକ୍ତି ନିୟମ [illegible] ସଂଶୋଧନ କରାଯାଇ ସମସ୍ତ ଖାଲିଥିବା ପଦବୀ ପୂରଣ [illegible] ବିହିତ ପଦକ୍ଷେପ ନିଆଯାଇଛି । ଦୀର୍ଘଦିନ ଧରି [illegible] ହୋଇପାରି ନଥିବା ଏସ୍: ଇ: ଏସ୍:, ଦ୍ୱିତୀୟ ଓ ପ୍ରଥମ [illegible] ପଦବୀଗୁଡ଼ିକ ସ୍ୱଳ୍ପକାଳୀନ ଭିତ୍ତିରେ ପୂରଣ କରାଯାଇଛି । [illegible] ସଂସ୍କୃତ ଶିକ୍ଷକ ଏବଂ ପି: ଇ: ଟି:ମାନଙ୍କୁ [illegible] ଇ: ଏସ୍: କ୍ୟାଡ଼ରଭୁକ୍ତ କରାଯାଇ ସେମାନଙ୍କର ପଦୋନ୍ନତି ସୁଯୋଗ ସୃଷ୍ଟି କରାଯାଇ ପାରିଛି । ମୟୂରଭଞ୍ଜ ଓ [illegible] ଜିଲ୍ଲାରେ 'ଓଲଚିକି' ଭାଷାର ପ୍ରସାର ପାଇଁ ପୁସ୍ତକ ପ୍ରକାଶନ ଓ ୨୦ଟି ମନୋନୀତ ପ୍ରାଥମିକ ସ୍କୁଲରେ ଶିକ୍ଷା ପ୍ରଦାନର ବ୍ୟବସ୍ଥା କରାଯାଇଛି ବୋଲି ମନ୍ତ୍ରୀ ଶ୍ରୀ ଘଡ଼ାଇ ପ୍ରକାଶ କରିଥିଲେ । ଶିକ୍ଷକ ଓ ଶିକ୍ଷାନୁଷ୍ଠାନମାନଙ୍କର ଅନ୍ୟ ଦାବୀ ଓ ଅଭାବ ଅସୁବିଧାଗୁଡ଼ିକ ସରକାରଙ୍କର ଆର୍ଥିକ ସଙ୍ଗତିକୁ ଦୃଷ୍ଟିରଖି [illegible] ପୂରଣ କରିବା ନିମନ୍ତେ ଆଲୋଚନା କରାଯାଉଛି ବୋଲି ସେ ପ୍ରକାଶ କରିଛନ୍ତି ।

ଏଣୁ, ବର୍ତ୍ତମାନର ପରିସ୍ଥିତିକୁ ହୃଦୟଙ୍ଗମ କରି ଶିକ୍ଷକମାନେ ଦାବୀଗୁଡ଼ିକ ପୂରଣ ନିମନ୍ତେ କୌଣସି ଆନ୍ଦୋଳନାତ୍ମକ [illegible] ଗ୍ରହଣ ନକରି ଛାତ୍ର ଛାତ୍ରୀମାନଙ୍କର ଭବିଷ୍ୟତ ଗଠନରେ [illegible] ପରିବର୍ତ୍ତନ ଆଣିବା ପାଇଁ ରାଜ୍ୟରେ ଶିକ୍ଷାର [illegible] ନିମନ୍ତେ ଆନ୍ଦୋଳନ କରିବାକୁ ଶ୍ରୀ ଘଡ଼ାଇ ଶିକ୍ଷକ [illegible] [illegible] ଦେଇଛନ୍ତି ।

OGP-MP-PTS (I&PR) 13-10.000-5-8-1994




ଭୁବନେଶ୍ୱରଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ମିଳିତ ଶିକ୍ଷକ ଓ କର୍ମଚାରୀ ସଂଘ ସମାବେଶରେ ଉଦ୍‌ବୋଧନ ଦେଉଛନ୍ତି ।




ଭୁବନେଶ୍ୱର ରୋଟାରୀ କ୍ଲବଠାରେ ବିଧାନସଭା-ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ଆମେରିକା ଓଡ଼ିଶା ସମାଜର ବାର୍ଷିକ ଉତ୍ସବରେ ଉଦ୍‌ବୋଧନ ଦେଉଛନ୍ତି ।

VOL. LI No. 1 UTAKAL PRASANGA Regd. No. O—BN—05/90
Licence No. C.R.N.P. 5—Licensed to post without Pre-payment



ଆକାଶ ମାର୍ଗରୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ବନ୍ୟା ପ୍ରପୀଡ଼ିତ ଅଞ୍ଚଳ ପରିଦର୍ଶନ କରିବା ପରେ ପରେ ସ୍ଥାନୀୟ ଲୋକଙ୍କୁ ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳରେ ରିଲିଫ ଯୋଗାଇବା ପାଇଁ ପ୍ରତିଶ୍ରୁତି ଘୋଷଣା କରୁଛନ୍ତି ।



ଜଗତସିଂହପୁର ଜିଲ୍ଲା ଅଳନାବାଦ ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳକୁ ରାଜସ୍ୱ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ରନାଥ ନାୟକ ପରିଦର୍ଶନ କରୁଛନ୍ତି ।

PRINTED AT ORISSA GOVERNMENT [illegible] CUTTACK-753 010

